ପ୍ରକାଶକ: **ଦକ୍ଷ ବୁକ୍ସ**, କଟକ
ମୁଦ୍ରଣ: ଜଗନ୍ନାଥ ପ୍ରୋସେସ୍ ପ୍ରା. ଲି, କଟକ

*ଏହି କାହାଣୀ ବା କାହାଣୀମାନଙ୍କରେ ବ୍ୟବହୃତ ଚରିତ୍ର, ନାମ, ସ୍ଥାନ ଏବଂ ଘଟଣାସବୁ କାଳ୍ପନିକ। ଏ ସମସ୍ତ ଲେଖା ଲେଖିକାଙ୍କ ଚିନ୍ତାଧାରାରୁ ଜନ୍ମିତ ବା ସମ୍ପୂର୍ଣ୍ଣ ରୂପେ କାଳ୍ପନିକ। ଏସବୁ ସହିତ ଯଦି କୌଣସି ଘଟଣା ବା ବ୍ୟକ୍ତିବିଶେଷ ଜୀବିତ ବା ମୃତ ଅବସ୍ଥାରେ ମେଳ ଖାଉଥିବେ ତେବେ ତାହା ସଂପୂର୍ଣ୍ଣ ରୂପେ ଅକସ୍ମାତ ବୋଲି ଧରିନିଆଯିବ ।*

Published in and by
Dakshya Books
(A unit of Dakshya Venture Pvt Ltd)
305, Siddhivinayak Residency
Jharpada,-751006, Bhubaneswar,
Khurdha, Odisha, India
Mob- 9778311533
E-mail: dakshyaodisha@gmail.com


Printed at Jagannath Process Pvt. Ltd
Dagarapada, Cuttack-02



**ABHISHAPTA**

*FICTION*

First Edition : **2014**

Price : ₹ 100/-

# ପଦେ-

'ଅଭିଶପ୍ତା' ଉପନ୍ୟାସ ୧୯୯୯ ମସିହାରେ ରଚିତ। ଉପନ୍ୟାସ କ୍ଷେତ୍ରରେ ଏହା ମୋର ପ୍ରଥମ ଉଦ୍ୟମ। ତେବେ ଲେଖିବା ପରେ ମନେ ହେଲା ବୋଧହୁଏ ମୁଁ କିଛି ଉଦ୍ଭଟ କଥା କହୁଛି ଏହି ଉପନ୍ୟାସରେ; ଯାହାକୁ ପାଠକ ବୋଧହୁଏ ଗ୍ରହଣ କରିବେ ନାହିଁ । ତେବେ ପରବର୍ତ୍ତୀ ସମୟରେ ଅଭିଜ୍ଞତା ଅନେକ କିଛି ଶିଖାଇଦେଲା ଏବଂ ଏହି ଉପନ୍ୟାସର ବିଷୟବସ୍ତୁ ଯାହା ତାହା ମାନବ ଜୀବନରେ ସମ୍ଭବର ସମ୍ଭାବନା ମୋତେ ଦେଖାଗଲା। ପ୍ରତିଟି ମଣିଷ ଚେତନ ଏବଂ ଅବଚେତନ ଅବସ୍ଥାର ଜୀବନ ଅତିବାହିତ କରିଥାନ୍ତି ଉଣା ଅଧିକେ ନିଜ ଜୀବନକାଳ ମଧ୍ୟରେ। ତେବେ ଏଠାରେ ଜଣଙ୍କର ଦୁଇଟି ବ୍ୟକ୍ତିତ୍ୱକୁ ସମାନ ଭାବରେ ପ୍ରତିପାଦନ କରାଯାଇଛି । ଏହି ଉପନ୍ୟାସଟି ପ୍ରଥମେ "ଫଲ୍‌ଗୁ" ପତ୍ରିକାରେ ପ୍ରକାଶିତ ହୋଇଥିଲା। ପାଠକମାନଙ୍କର ପ୍ରତିକ୍ରିୟା ଏବଂ ଅଯାଚିତ ଆଗ୍ରହ ଦେଖି ବର୍ତ୍ତମାନ ଏହି ଉପନ୍ୟାସଟି ଏକ ପରିବର୍ତ୍ତିତ ଏବଂ ପରିବର୍ଦ୍ଧିତ ହୋଇ ପୁସ୍ତକର ରୂପ ନେଇଛି।

- ସୁନୀତି

ସକାଳୁ ନିତ୍ୟକର୍ମ ସାରି ଶୁଭଦାଦେବୀ ଦର୍ପଣ ସାମ୍ନାରେ ପ୍ରସ୍ତୁତ ହେଉଥିଲେ । ହଠାତ୍ ସ୍ୱାମୀ ବରୁନ୍ ପଛପଟୁ ଆସି ଡାହାଣ ହାତରେ ତାଙ୍କ ଅଧା ଖୋଲା ପେଟକୁ ଜାବୁଡ଼ି ଧରି ଗଣ୍ଡଦେଶରେ ଏକ ଚୁମ୍ବନ ଆଙ୍କି ଦେଲେ । ସାରା ଦେହରେ ଶିହରଣ ଖେଳିଗଲା ଶୁଭଦାଦେବୀଙ୍କର ।

'ମୁଁ ପୂଜା କରିବାକୁ ଯିବି ଯେ..., ଝିଅ ସିଆଡେ ଉଠିଲାଣି..., ତାକୁ ସ୍କୁଲ ପାଇଁ ପ୍ରସ୍ତୁତ କରିବାକୁ ପଡିବ... ପ୍ଲିଜ୍, ଏବେ ଛାଡି ଦିଅନା' -ଏ କଥା କହିଲା ବେଳକୁ ଦର୍ପଣରେ ବରୁନ୍‌ର ପ୍ରତିଛବି ଆଉ ଦେଖି ପାରିଲେନି ଶୁଭଦା ଦେବୀ । ଏଇମିତି ଅନୁଭବ ବେଳେ ବେଳେ ରୋମାଞ୍ଚିତ କରେ ଶୁଭଦାଦେବୀଙ୍କୁ ଆଉ ଅନୁଭବକୁ ନେଇ ସେ ବଞ୍ଚିଆସିଛନ୍ତି ଏତେ ଗୁଡାଏ ଦିନ । କହିବାକୁ ଗଲେ ସମଗ୍ର ଜୀବନ ।

ଶୁଭଦାଦେବୀ, ମାଳତୀକୁ ତାଗିଦ୍ କଲେ ଝିଅକୁ ସ୍କୁଲ ଯିବା ପାଇଁ ପ୍ରସ୍ତୁତ କରିବାକୁ । ବରୁନ୍ ଯେଭଳି ଶୁଭଦାଦେବୀଙ୍କ କଳ୍ପନାରେ ଆସି ଚାଲିଯାଏ ଝିଅ

ବରଖା ମଧ୍ୟ ତାଙ୍କ କଳ୍ପନା ଘେର ଭିତରକୁ ପଶିଆସେ କେତେବେଳେ କେମିତି। ବାତ୍ସଲ୍ୟ ମମତାରେ ତା'ସାଙ୍ଗରେ ମନଖୋଲା ଦୁଇପଦ କଥାହେଲା ପରେ ପୁଣି ସେ ଫେରିଯାଏ ତା'ରାଇଜକୁ ଆଉ ଶୁଭଦା ଦେବୀ ତାଙ୍କ ବାସ୍ତବିକ ଦୁନିଆଁକୁ । ସତରେ କ'ଣ କଳ୍ପନାର ଅନୁଭବକୁ ନେଇ ମଣିଷ ବଞ୍ଚିପାରେ ସାରା ଜୀବନ ? ବାସ୍ତବିକ ପରିଧି ଭିତରକୁ ପଶିଗଲେ କଳ୍ପନା ମୁହଁ ଲୁଚାଇ କେଉଁଆଡେ ଚାଲିଯାଏ ତାକୁ କେବେ ଖୋଜିନାହାନ୍ତି ଶୁଭଦାଦେବୀ । କଳ୍ପନାର ଅନୁଭବ ଯେତେବେଳେ ତାଙ୍କୁ ବଞ୍ଚିବାର ରାହା ଦେଇଛି ସେତେବେଳେ ସେପରି କଳ୍ପନାକୁ ନେଇ ବିରୋଧ ବା ଅଭିଯୋଗ କରିବା ତାଙ୍କର ବା କ'ଣ ଦରକାର। ବେଳେବେଳେ କାଳ୍ପନିକ ଭାବନା ଜୀବନରେ ସତ୍ୟ ଲାଗୁଥିଲାବେଳେ ବାସ୍ତବିକ ଘଟଣା ମିଥ୍ୟା ଅନୁଭୂତ ହୁଏ । ଶୁଭଦାଦେବୀଙ୍କର ଜୀବନରେ ଏପରି ସତ୍ୟତା ତାଙ୍କୁ ଦେଇଛି ବଞ୍ଚିବାର ରାହା । ତା'ମଧ୍ୟରେ ସେ ପାଇଛନ୍ତି ତାଙ୍କ ପ୍ରେମକୁ ଏବଂ ଉପଭୋଗ କରୁଛନ୍ତି ସଂସାରର ଛୋଟ ଛୋଟ ସୁଖକୁ। କଳ୍ପନା ଏବଂ ବାସ୍ତବ ଭିତରେ ଥିବା ଫରକକୁ ସେ ଚିହ୍ନି ପାରନ୍ତିନି କି ଚିହ୍ନିକି ଅଚିହ୍ନା ପରି ହୁଅନ୍ତି ତାହା ମାଳତୀ ଜାଣେନା।

ଏହି କିଛି ବର୍ଷ ହେଲା ମାଳତୀ ଆସି ଶୁଭଦାଦେବୀଙ୍କ ପାଖରେ ରହିଛି ତାଙ୍କର ଦେଖାଚାହା କରିବା ପାଇଁ । ଶୁଭଦାଦେବୀଙ୍କର ଏପରି ଅସ୍ୱଭାବିକ ପ୍ରକ୍ରିୟା ପ୍ରଥମେ ମାଳତୀକୁ ଖାପଛଡା ଲାଗୁଥିଲା । କିନ୍ତୁ ଯେତେବେଳେ ସେ ଜାଣିଲା ଏପରି ଅସ୍ୱାଭାବିକ ହାବଭାବ ଯେ ଶୁଭଦାଦେବୀଙ୍କୁ ସ୍ୱାଭାବିକ ଜୀବନ ବଞ୍ଚିବାର ସାହସ ଯୋଗାଉଛି ସେ ନିରବ ରହିବାକୁ ଉଚିତ୍ ମନେକଲା। ଖାଲି ନୀରବ ତ ରହିଲାନି ଶୁଭଦାଦେବୀଙ୍କ ପ୍ରତିକ୍ରୀୟାରେ ସେ ମଧ୍ୟ ସହଯୋଗ କଲା। ଠିକ୍ ଯେମିତି ପ୍ରତିବର୍ଷ ରଜ ଆସିଲେ ଶୁଭଦାଦେବୀଙ୍କର ପାଦ ତଳେ ଲାଗେନି ଝିଅକୁ ସଜବାଜ କରିବା ପାଇଁ। ନୂଆ ଡ୍ରେସ୍ କିଣାଠାରୁ ଆରମ୍ଭ କରି ଅଳତା କୁଙ୍କୁମ ପର୍ଯ୍ୟନ୍ତ କିଣିବାରେ କେଉଁଥିରେ କମ୍ କରନ୍ତିନି ସେ । ଓଡିଆ ଝିଅର ରଜପର୍ବ ତା' ଦେହର ଅଳଙ୍କାର ପରି। ମାଟିମାଆର ପୂଜା କରୁ କରୁ ଓଡିଆ ଝିଅ ସଂପୂର୍ଣ୍ଣତା ପାଇବାର ପ୍ରକ୍ରୀୟା ଜାଣିଥାଏ ଏହି ପର୍ବ ମାଧ୍ୟମରେ । ଶୁଭଦା ଦେବୀ ମଧ୍ୟ ଚାହାନ୍ତି ଉଗ୍ର ଆଧୁନିକତାର ଛାପରେ ଝିଅ ତାଙ୍କର ଓଡିଆ ସଂସ୍କୃତିକୁ ଭୁଲିନଯାଉ। ସେଥିପାଇଁ ରଜ ପୂର୍ବର ରାତି ସରିବା ଆଗରୁ ସେ

ସାରିଦେଇଥାନ୍ତି ପୋଡପିଠାର ପ୍ରସ୍ତୁତି । ଝିଅ ପୋଡପିଠା ଭଲ ପାଏ ବୋଲି ମାଳତୀ ମଧ୍ୟ ଭଲ କରି ବିରିଚାଉଳ ବାଟି ଥୋଇଦେଇଥାଏ ରୋଷେଇ ଶାଳରେ । ଘର ଅଗଣାର ଲୁହା ଫ୍ରେମ୍‌ରେ ଦୋଳି ଝୁଲାଇ ଝିଅକୁ ଦୋଳିରେ ଝୁଲାନ୍ତି ଶୁଭଦାଦେବୀ। ସେହି ସମୟରେ ତାଙ୍କର ହାବଭାବ ଯେତିକି ବାସ୍ତବିକ ଲାଗେ ତେବେ ତାଙ୍କୁ ଯେ କେହି ଦେଖିଲେ ମତ ଦେବ ସେ ହୁଏତ ମାନସିକ ସ୍ତରରେ ଜଣେ ଅସ୍ୱଭାବିକ ମଣିଷ । କିନ୍ତୁ ମୁହଁ ଖୋଲେନି ମାଳତୀ । ପରଦା ଫାଙ୍କରେ ଏସବୁକୁ ଦେଖି ଛାତିର କୋହକୁ ଲୁହ କରି ଆଖି କୋଣରୁ ନିଗାଡି ଆଣେ ସେ। ପଣତକାନିରେ ମୁହଁ ପୋଛୁ ପୋଛୁ ମନେ ମନେ ଭାବେ ନିଜ ପ୍ରେମକୁ ନିଜ ସଂସାରକୁ ଏପରି ପାଗଳୀ ଭାବରେ ଭଲ ପାଉଥିବା ମଣିଷ ଜଣକୁ ଭଗବାନ କେଉଁ ଦୋଷ ପାଇଁ ଦଣ୍ଡିତ କଲେ । ମଣିଷ ଯେତେବେଳେ ନିଜ ନିୟନ୍ତ୍ରଣ ବା ଚେତନାର ଘେର ମଧ୍ୟକୁ ଚାଲିଆସୁଛି ଅସ୍ୱାଭାବିକ ଭାବରେ ନିରବ ଆଉ ନିଶ୍ଚଳ ହୋଇଯାଉଛି । କିନ୍ତୁ ଅବଚେତନ ଅବସ୍ଥାରେ ସେହି ମଣିଷକୁ ସ୍ୱଭାବିକ ଭାବରେ ଚଳଚଞ୍ଚଳ ଅବସ୍ଥାରେ ଦେଖିବାକୁ ମିଳୁଛି । ଦୁନିଆରେ ବଞ୍ଚିବାର ସଂଗ୍ରାମ ମଧ୍ୟରେ ଯଦି ଅବଚେତନର ପ୍ରଭାବ ମଣିଷକୁ ବଞ୍ଚିବାର ରାହା ଯୋଗାଉଛି ତେବେ ତାହା ମଧ୍ୟରେ ବଞ୍ଚି ରହିବାର ଦୋଷ ରହିଲା ବା କେଉଁଠି ?

ଖାଲି ରଜ ନୁହେଁ କୁମାର ପୂର୍ଣ୍ଣିମା ଏବଂ ଖୁଦୁରୁକୁଣୀରେ ସାହି ପଡିଶା କୁଆଁରୀ ଝିଅମାନଙ୍କର ହୁଳହୁଳି ଶବ୍ଦ ଶୁଣିଲେ ଶୁଭଦାଦେବୀ ଝିଅକୁ ନେଇ ବ୍ୟସ୍ତ ହୋଇଯାଆନ୍ତି । ମାଳତୀ ବ୍ୟତିବ୍ୟସ୍ତ ହୋଇପଡେ ଏହି ଦିନମାନ ଆସିଗଲେ । ସେ ଠିକ୍ ଜାଣେ ଏହି ପର୍ବପର୍ବାଣୀଗୁଡିକ ଶୁଭଦାଦେବୀଙ୍କୁ ଭିନ୍ନ ଦୁନିଆକୁ ନେଇଯିବ । ମାଳତୀ ମନରେ ଅନେକ ସମୟରେ ଭୟ ଜାତ ହୁଏ; କାଳେ ଶୁଭଦାଦେବୀ ନିଜର ଅବଚେତନ ସଂସାରରୁ ଯଦି ଫେରି ନପାରନ୍ତି ! ଶୁଭଦାଦେବୀ କାଳେ ଅବଚେତନ ଅବସ୍ଥାରୁ ମୁକୁଳି ନପାରି କଳ୍ପନାର ମରିଚିକା ଭିତରେ ସାରା ଜୀବନ ଘାଣ୍ଟିଚକଟି ହେବେ ଏହି ଆଶଙ୍କାରେ କେବେକେବେ ଭୟଭୀତ ହୁଏ ମାଳତୀ। ସେଥିପାଇଁ ଶୁଭଦାଦେବୀଙ୍କର ଅବଚେତନ ଅବସ୍ଥାର ପ୍ରତିଟି ପ୍ରକ୍ରୀୟାରେ ତାଙ୍କୁ ସହଯୋଗ କରି ଅଯଥା ମାନସିକ ଆଘାତ ଯେମିତି ନହୁଏ ସେଥିପାଇଁ ଯତ୍ନବାନ୍ ହୁଏ

ସେ ଆଉ ମନେ ମନେ ଚିଡେ ପଡିଶାଘର ଝିଅମାନଙ୍କ ଉପରେ । ପର୍ବପର୍ବାଣୀ ଗୁଡିକରେ ସେମାନଙ୍କର ଅଯଥା ହୋହାଲ୍ଲାରେ ପ୍ରତିକ୍ରୀୟାଶୀଳ ହୁଅନ୍ତି ଶୁଭଦାଦେବୀ । ତାଙ୍କ କାନରେ ଯେତେବେଳେ ଥରେ ସେହି ପର୍ବପର୍ବାଣୀଗୁଡିକୁ ନେଇ ପ୍ରସ୍ତୁତିର କଥା ପହଞ୍ଚେ ସେ ନିଜକୁ ନିୟନ୍ତ୍ରଣରେ ରଖିପାରନ୍ତିନାହିଁ ।

ଝିଅ ବରଖାକୁ ନେଇ ସେ ନିଜ ଭିତରେ ଉନ୍ମାଦିତ ହୋଇଉଠନ୍ତି। କେବେ ବି ମୁହଁ ଖୋଲେନି କି ବିରୋଧ କରେନି ମାଳତୀ ଶୁଭଦାଦେବୀଙ୍କର ଏଭଳି ଅବଚେତନ ପ୍ରତିକ୍ରୀୟାକୁ । ତାଙ୍କର ପ୍ରତିଟି କଥାକୁ ସେ ହଁ ଭରେ । ଯେମିତି କି କୁମାର ପୂର୍ଣ୍ଣିମାରେ ସକାଳୁ ଝିଅକୁ ଗାଧୋଇ ଦେଇ ସଜବାଜ କରାଇ ନୂଆ ଡ୍ରେସ୍ ପିନ୍ଧାଇବାଠାରୁ ଆରମ୍ଭ କରି ସନ୍ଧ୍ୟାରେ ଜହ୍ନ ଆଗରେ ଯୋଗ୍ୟ ବର ଲାଭ ମନାସି ଆଞ୍ଜୁଳି ଟେକିବା ପର୍ଯ୍ୟନ୍ତ। ଖୁଦୁରୁକୁଣୀରେ ବି ଠିକ୍ ସେୟା ଦେଖିବାକୁ ମିଳେ ବିଭିନ୍ନ ରକମର ଭୋଗକୁ ଥାଳିରେ ସଜାଇ ମାଳତୀ ଦେଇଆସେ ସାହିରେ ଝିଅମାନେ କରୁଥିବା ପୂଜା ପାଖରେ । ନଅ ମାସର ଯନ୍ତ୍ରଣା ଭୋଗନକରି, ମାତୃତ୍ୱ ଲାଭ ନକରି ଏପରି ଅନାବିଳ ମାତୃବତ୍ସଳତା ବେଳେ ବେଳେ ଦ୍ୱନ୍ଦ୍ୱରେ ପକାଏ ମାଳତୀକୁ ସତ କ'ଣ ଜାଣିବାକୁ । କିନ୍ତୁ ସାହାସ ଯୁଟାଇ ପାରେନି ସେ ଶୁଭଦାଦେବୀଙ୍କୁ କିଛି ପଚାରିବା ପାଇଁ ।

ସେଦିନ ସନ୍ଧ୍ୟାରେ ହଠାତ୍ ସବୁକିଛି ଘଟିଗଲା । ଶୁଭଦାଦେବୀ ଚପା କଣ୍ଠରେ ଡାକିଲେ ମାଳତୀକୁ । କାନ ପାଖରେ ଚୁପ୍ ଚୁପ୍ କହିଲେ, "କିରେ ମାଳତୀ ଝିଅ ବଡ ହୋଇଗଲା । ଯା ତୁରନ୍ତ ସବୁ ବ୍ୟବସ୍ଥା କର । ସେ ଘର ଦରଜା ବନ୍ଦ କରି ଦେ । କୌଣସି ପୁରୁଷ ଲୋକ ସେ ଘର ଭିତରକୁ ଚାହିଁବେନି ଯେମିତି । ସାତ ଦିନ ଝିଅ ସେ ଘରେ ରହିବ ।" ଝିଅ ମୋର ଏବେ କୁମାରୀରୁ ନାରୀତ୍ୱ ଲାଭ କଲା । ସବୁ ମାଆମାନଙ୍କର ତ ନିଜ ଝିଅର ଏହି ଦିନକୁ ଅପେକ୍ଷା ଥାଏ ।

ଶୁଭଦା ଦେବୀ ନିଜେ ନିଜେ ବ୍ୟସ୍ତ ହୋଇ ପଡୁଥାନ୍ତି । ମାଳତୀ ମଧ୍ୟ ଶୁଭଦାଦେବୀଙ୍କ କଥାନୁଯାୟୀ ସବୁ କାମ କରିଚାଲିଥାଏ । ତାଙ୍କର କୌଣସି କଥାରେ ପ୍ରତିବାଦ କରେନି । ଏପରି କି ସାତ ଦିନ ପରେ ଝିଅ ରହିବା ଘର

କହୁଥିବା ଘରକୁ ନୂଆ ଚୁନ ପୋତା ସହିତ ଘରକୁ ଧୁଆଧୋଇ କରି ବନ୍ଧାପନା ବି ସେ କରିବାରେ ବ୍ୟସ୍ତ ହୋଇପଡନ୍ତି ।

ଶୁଭଦାଦେବୀଙ୍କ ମାନସିକ ପରିଧି ଯେ ଝିଅ ଆଉ ସ୍ୱାମୀକୁ ନେଇ ଅସଂପୂର୍ଣ୍ଣ ତାହା ମାଳତୀ ଭଲ ଭାବେ ଜାଣିଥିଲା । ପ୍ରେମ ଶରୀରରେ ନୁହେଁ ମନରେ ଅଧିକ ଥାଏ ବୋଲି ଶୁଭଦାଦେବୀ ପ୍ରମାଣ କରିସାରିଥିଲେ । ରାତି ପାହିଲେ ଶୁଭଦାଦେବୀ ବିଛଣା ଛାଡି ନିତ୍ୟକର୍ମ ସାରି ସ୍ୱାମୀଙ୍କର ପାଦଧୂଆ ପାଣି ମୁହଁରେ ନମାରିଲେ କିଛି କରନ୍ତି ନାହିଁ । ଏ ଯୁଗରେ ବି ଏପରି ଚିନ୍ତାଧାରାର ସ୍ତ୍ରୀ ଅଛନ୍ତି ତାହା ମାଳତୀକୁ ଆଶ୍ଚର୍ଯ୍ୟ କରାଏ । ଏହି ଗଲା ସାବିତ୍ରୀରେ ଶୁଭଦାର ସାବିତ୍ରୀ ବ୍ରତ କରିବା ନେଇ ସାହି ପଡିଶା କେତେ ଚୁପୁରୁଚାପୁରୁ ହେଲେ। ସେସବୁ ପ୍ରତି କେବେ ନିଘା କରନ୍ତିନି ସେ। ସ୍ୱାମୀ ଆଉ ସନ୍ତାନର ମଙ୍ଗଳ ମନାସିବା ଛଡା ତାଙ୍କର ଯେପରି ଜୀବନରେ ଆଉ କୌଣସି ଉଦ୍ଦେଶ୍ୟ ନାହିଁ। ନିଇତି ଏମିତି କଳ୍ପନାରେ ବରୁନ୍‌ର ସାନ୍ନିଧ୍ୟରେ ଭିଜିବା ଏବଂ ଝିଅ ସାଙ୍ଗରେ ହସଖୁସୀ ହେବା ତାଙ୍କ ଜୀବନର ଏକ ସତ୍ୟତା ପାଲଟି ଯାଇଛି ଯେପରି ।



ଝିଅକୁ ତ ବିବାହ ବୟସ ଛୁଇଁଲାଣି, ସମୟ ଯାହା ହେଲାଣି ବଢ଼ିଲା ଝିଅକୁ ଘରେ ରଖିଲେ ଯେ କେତେ ବିପଦ ତାହା ଆଜିର ବାପା ମାଆମାନେ ହିଁ ଜାଣିଛନ୍ତି । ନିର୍ଭୟାର ଗଣବଳାତ୍କାର ପରେ ଏହି ଭୟ ତ ଆହୁରି ବଢ଼ିଯାଇଛି । ନେଡି ଗୋଡ କହୁଣୀକୁ ବୋହିବା ଆଗରୁ ଝିଅକୁ ହାତରୁ ଦୁଇହାତ କରିଦେଲେ କଥା ସରିଲା ।

ଏଇମିତି ବାନ୍ଧବୀ ସାଜି କେତେ ଥର ପ୍ରଶ୍ନ କରିଛନ୍ତି ଝିଅର ପସନ୍ଦ ଆଉ ନାପସନ୍ଦକୁ ନେଇ କିନ୍ତୁ ସବୁଥର ସେହି ଗୋଟିଏ କଥାରେ ସେ ଅଟକି ଯାଆନ୍ତି । ଖୋଜିଲେ ସିନା ବର ମିଳିଯିବ ପଣ୍ଡିତ ଆସି ବେଦୀରେ ମନ୍ତ୍ରପାଠସିନା ଉଚ୍ଚାରଣ କରିଦେବ ହେଲେ କନ୍ୟା ଦାନ କରିବ କିଏ ? ଝିଅକୁ ଏଡିକରୁ ଏଡିକଟିଏ କଲି ଶେଷରେ ତାକୁ ଏମିତି ସେମିତି କରି କିପରି ବିବାହ ଦେଇଦେବି ? ସାହିପଡିଶା କ'ଣ କହିବେ... ? ସମାଜ ଆଗରେ କି ଉତ୍ତର ଦେବି ?

ତୁମେ ଯଦି ମୋତେ ମାତୃତ୍ୱର ସୁଯୋଗ ଦେଇନଥାଆନ୍ତ ମୁଁ ହୁଏତ ଏହି ସନ୍ଧିହାନ ଭିତରେ ଗତି

କରିନଥାନ୍ତି । ଦିନ ତିନିଟା ଗଲେ ଝିଅର ବାହା ଘର। କୁଣିଆ ମୈତ୍ରରେ ଘରଟା ଭର୍ତ୍ତି ଥିବ ତା' ବାପାକୁ ସମସ୍ତେ ଖୋଜିବେ, କି ଉତ୍ତର ଦେବି ତ କୁହ ? ମୁଁ ଆଉ ପାରୁନି । ତୁମ ପ୍ରତୀକ୍ଷାର ଆଶା ଯେତିକି ଦୂରେଇ ଦୂରେଇ ଯାଉଛି ତୁମ ଆଗମନ ଆଶାର ଅନ୍ତ ସେତିକି ପାଖେଇ ପାଖେଇ ଆସୁଛି। ଏହି ଭାବନା ଭିତରେ ଶୁଭଦା ଦେବୀ ଛଟପଟ ହେଉଥିଲେ ନିଜ କଳ୍ପନାର ଅନୁଭବକୁ ନେଇ, ନିଜ ପ୍ରେମକୁ ନେଇ, ଆଉ ଝିଅର ବିବାହକୁ ନେଇ । ସେ ଜାଣିପାରୁ ନଥିଲେ ଏପରି ଭାବନା ଖାଲି କଳ୍ପନାର ଛାୟା ନା ବାସ୍ତବର ଛିଟା ଆଲୁଅ ?

ଏମିତି ଗୁଡାଏ କଥା ଭାବି ବିଚଳିତ ହୋଇ ପଡନ୍ତି ଶୁଭଦାଦେବୀ ଅନେକ ବେଳରେ। ଶୁଭଦାଦେବୀ ଯେ କି ନିଜ ଯୌବନକୁ ଏକ ପୁରୁଷର ସ୍ୱପ୍ନମୟ କଳ୍ପନା ମଧ୍ୟରେ ବିତାଇ ଦେଇଛନ୍ତି ଅଥଚ କେବେ ବି ସ୍ୱାମୀର ଶୀତଳ ସ୍ପର୍ଶ ପାଇନାହାନ୍ତି। କିନ୍ତୁ ସ୍ତ୍ରୀ ହେବାର ସମସ୍ତ ଅନୁଭୁତି ଏବଂ ଅଭିଜ୍ଞତା ତାଙ୍କରି ପାଖରେ। ସେ ବିଶ୍ୱାସ କରନ୍ତି ପ୍ରେମ ପାଇଁ ଦେହ ନୁହେଁ ମନ ଆଉ ହୃଦୟର ଆବଶ୍ୟକତା ରହିଛି। ନା' ଆବଶ୍ୟକତା କହିଲେ ଭୁଲ ହେବ, ପ୍ରେମ ପାଇଁ କୌଣସି ଆବଶ୍ୟକତାର ପ୍ରୟୋଜନ ନାହିଁ । ବାସ୍ କେବଳ ଗୋଟିଏ ଅନୁଭବ। ଅନୁଭବ ପରସ୍ପର ପ୍ରତି ସମର୍ପଣର, ନିଃସର୍ତ୍ତ ସମ୍ମାନର ଆଉ ଗ୍ରହଣର। ସ୍ୱାମୀ ସ୍ତ୍ରୀ ସଂପର୍କ ଏକ ପବିତ୍ର ବନ୍ଧନ ଯେଉଁ ବନ୍ଧନରେ ଥରେ ବାନ୍ଧି ହୋଇଗଲେ ଗୋଟିଏ ଜନମ ନୁହେଁ ଜନ୍ମ ଜନ୍ମର ସଂପର୍କରେ ବାନ୍ଧିହେବାର ଶପଥ ନିଅନ୍ତି ସ୍ୱାମୀ-ସ୍ତ୍ରୀ। ଭଲ ପାଇବା ଏବଂ ପ୍ରେମ ଏସବୁ ଅନୁଭବକୁ ନେଇ ବଞ୍ଚିବାକୁ ହୁଏ ଜୀବନ ପରେ ଜୀବନ। ଜଣଙ୍କର ଆଘାତକୁ ଆର ଜଣକ ଭାଗ ବସିବାରେ କଞ୍ଜୁସୀ କରେନି ତ ଆଉ କେତେବେଳେ ଜଣଙ୍କର ଆନନ୍ଦର ମୁହୂର୍ତ୍ତରେ ଆର ଜଣକ ନିଃସ୍ୱାର୍ଥ ପର ଭାବରେ ଆନନ୍ଦିତ ହୁଏ।

ଶୁଭଦା ଦେବୀ ସ୍ୱାମୀବୋଲି ଯାହାକୁ ସମ୍ମାନ କରନ୍ତି ତା'ଠାରୁ କେବେ ନିଜ ମଥାରେ ସିନ୍ଦୂର ନାଇ ନାହାନ୍ତି କି ତା' ନାମର ଶଙ୍ଖା କେବେ ହାତରେ ପିନ୍ଧି ନାହାନ୍ତି। କିନ୍ତୁ ଏପରି ଘଟଣାକୁ ନା ସେ କେବେ ବିଡମ୍ବନା ବୋଲି

ଭାବିଛନ୍ତି  ନା କେବେ ନିଜ ଭାଗ୍ୟକୁ ହତାଦର କରିଛନ୍ତି । ପ୍ରେମିକ ନୁହେଁ ପ୍ରେମକୁ ନେଇ ଯେ ବଞ୍ଚି ହୁଏ ସେ କଥା ତାଙ୍କ ହୃଦୟ ତାଙ୍କ ମନକୁ ବହୁବାର କହିସାରିଛି ।

ଦାମ୍ପତ୍ୟ ସମ୍ପର୍କ ଯେ କେବଳ ହୋମ ନିଆଁକୁ ସାକ୍ଷୀ ରଖି ମନ୍ତ୍ରପାଠ କରି ହାତଗଣ୍ଠି ପଡିଗଲେ ଯେ ସମ୍ଭବ ସେସବୁ ବିଶ୍ୱାସ କରନ୍ତିନାହିଁ ଶୁଭଦାଦେବୀ। ଭଲ ପାଇବାର ପୁରୁଷକୁ ଯଦି ନିଜର କରି ସ୍ୱାମୀର ପଦବାଚ୍ୟ ଦିଆଯାଇପାରିଲା ସେଥିରେ ଭୁଲ ରହିଲା କେଉଁଠି ? ମନର ଆକର୍ଷଣ ଆଗରେ ଦେହର ଆକର୍ଷଣ ଯେ ହାର ମାନିଯାଏ ସେକଥା ସେ ତାଙ୍କର ସୀମିତ ଜୀବଦଶା ଭିତରେ ପ୍ରମାଣ କରିସାରିଛନ୍ତି । ଭଲ ପାଇବା ବା ପ୍ରେମରେ ପଡିବା ଏକ ନିଆରା ଅନୁଭୂତି। କେତେବେଳେ ବସ୍‌ର ଭିଡ ଭିତରେ, ପାଖରେ ଘସି ହେଉଥିବା ଅଜଣା ମଣିଷଟା ଯେ ସାରା ଜୀବନର ସାଥୀ ହୋଇଯିବ ସେକଥା କିଏ କହିବ ? କଫି ସପ୍‌ର କୋଣରେ ବସି ଗରମ କଫିର ମଜା ନେଉଥିବା ମଣିଷ ଯେ ପାଖ ଟେବୁଲ୍‌ରେ ବସିଥିବା ଝିଅକୁ ଥରେ ବି ଚାହୁଁ ନଥିବ, କିଏ ଜାଣେ ଦିନେ ଅଗ୍ନିକୁ ସାକ୍ଷୀ ରଖି ସାତ ଘେରା ନେଇ ତା' ସାଙ୍ଗରେ ସଂସାର କରିବ। ଭିଡ ଷ୍ଟେସନ୍ ଭିତରେ ଗାଡି ଖୋଜୁ ଖୋଜୁ ଅଜାଣତରେ ଧକ୍କା ହୋଇଯାଇଥିବା ମଣିଷକୁ ମନେ ମନେ ଗାଳି କରିସାରିବା ପରେ କିଏ ଜାଣିଛି ସାରା ଜୀବନ ତା' ହାତ ଧରି ସଂସାରର ଯାତ୍ରୀ ହେବ ? ସେଇଥିପାଇଁ ତ ପ୍ରେମକୁ ଆଗରୁ ଚିହ୍ନିବା ବା ଦେଖିବା ମୁସ୍‌କିଲ୍; ଏକ୍‌ଦମ ମୁସ୍‌କିଲ୍। ଓଲଟି ତାର ବାସ୍ନାକୁ ଖୋଜି ବୁଲିଲେ ସେ ହୁଏତ ମିଳିଯାଇପାରେ କିନ୍ତୁ ତାକୁ ହୃଦୟର ମୁଠାରେ ବାନ୍ଧି ରଖିବା ପାଇଁ ସମର୍ପଣ ଆଉ ବିଶ୍ୱାସ ନିହାତି ଦରକାର । ଶୁଭଦାଦେବୀ ସିନା ଦିନେ ତାଙ୍କ ପ୍ରେମକୁ ଖୋଜି ପାଇଥିଲେ ତଥାପି ତାକୁ ଜାବୁଡି ଧରିବାର ପ୍ରୟାସରେ ସେ କେତେ ସଫଳ ବା ଅସଫଳ ହୋଇଥିଲେ ତାହା କେବଳ ତାଙ୍କରି ହୃଦୟ ହିଁ କହିପାରିବ । ତଥାପି ସେଇ ପ୍ରେମର ଅନୁଭବରେ  ସେ କାଟି ଚାଲିଛନ୍ତି ଗୋଟିଏ ପରେ ଗୋଟିଏ ମୁହୂର୍ତ୍ତ ସାଥିରେ ପ୍ରେୟସ ଥାଉ ବା ନଥାଉ ।

ବରୁନ୍ ଏବଂ ଶୁଭଦାର ସାକ୍ଷାତ ହୁଏ ଶୁଭଦା ପଢୁଥିବା ମହାବିଦ୍ୟାଳୟର ଏକ ସଭାରେ। ସେହି ସଭା ବା ଆଲୋଚନା ଚକ୍ରରେ ବରୁନ୍ ଜଣେ ନିମନ୍ତ୍ରିତ

ଅତିଥି ହୋଇଥିବାବେଳେ ଶୁଭଦା ଜଣେ ବକ୍ତା ଭାବରେ ଯୋଗ ଦେଇଥିଲା। ଆଲୋଚନା ଚକ୍ରର ବିଷୟବସ୍ତୁ ଥିଲା- 'ନାରୀ; ନିର୍ଯାତନାରୁ ବଞ୍ଚିବା ପାଇଁ ଆଜିର ଆଇନ୍ ଯଥେଷ୍ଟ କି ?' ଏହି ବିଷୟବସ୍ତୁକୁ କେନ୍ଦ୍ରକରି ଗୋଟିଏ ପରେ ଗୋଟିଏ ବକ୍ତା ନିଜ ନିଜର ବକ୍ତବ୍ୟ ଶେଷ କରି ନିଜ ସ୍ଥାନକୁ ଫେରି ଯାଉଥିଲେ। ସମାଜ ଏବଂ ଶୋଷଣର ଜ୍ୱଳନ୍ତ ପ୍ରତିଛବିକୁ ଶ୍ରୋତାମାନଙ୍କ ସାମ୍ନାରେ ଜଣକ ପରେ ଜଣେ ଉପସ୍ଥାପିତ କରିଚାଲିଥିଲେ। ଶେଷରେ ମଞ୍ଚ ଉପରକୁ ଆସିଲା ଶୁଭଦା। ସେ ଯେତିକି ଆକର୍ଷଣୀୟ ଦେଖାଯାଉଥିଲା ତା'ଠାରୁ ଅଧିକ ଆକର୍ଷଣୀୟ ଆଉ ଆବେଗମୟ ଥିଲା ତା'ସ୍ୱର ଆଉ ବକ୍ତବ୍ୟ। ଉପସ୍ଥିତ ଅତିଥୀ ମଣ୍ଡଳୀ ଏବଂ ଶ୍ରୋତାମାନଙ୍କୁ ସମ୍ବୋଧନ କରି ସେ ତାର ବକ୍ତବ୍ୟ ଉପସ୍ଥାପିତ କଲା। ତା' ବକ୍ତବ୍ୟ ଥିଲା-

..."ଆଜି ଏହି ମଞ୍ଚରେ ଠିଆ ହୋଇ ମୁଁ ଏହି ସମାଜରେ ନିତିଦିନ ହେଉଥିବା ଅନ୍ୟାୟ ଓ ଅତ୍ୟାଚାରର ମୁଖା ଖୋଲିବାକୁ ଯାଉଛି। ମଣିଷ ଗୋଟିଏ ସାମାଜିକ ପ୍ରାଣୀ। ସମାଜ ମଣିଷକୁ ଖାଲି ସାମାଜିକ ହେବାକୁ ତ ଶିଖାଏନି ଓଲଟି ଅନ୍ୟାୟ ଆଉ ଅତ୍ୟାଚାର ବିରୁଦ୍ଧରେ ସାହାସର ସହିତ ଲଢ଼ିବା ପାଇଁ ପ୍ରସ୍ତୁତ କରାଏ। ଏଠାରେ ଉପସ୍ଥିତ ପ୍ରତିଟି ଶ୍ରୋତା, ଅତିଥି ମଣ୍ଡଳୀ ଏପରିକି ମୁଁ ମଧ୍ୟ ସେହି ସମାଜର ଗୋଟିଏ ଅଂଶ ବିଶେଷ। ଆଜିର ଆଲୋଚିତ ବିଷୟବସ୍ତୁ ଏକ ଆଖି ଦୃଶିଆ ପଦକ୍ଷେପ ସଦୃଶ୍ୟ। ଯେହେତୁ ଆମ ସମସ୍ତଙ୍କୁ ନେଇ ସମାଜ ସୃଷ୍ଟି ଏବଂ ସମୃଦ୍ଧ ଅତଏବ ସମାଜରେ ଘଟୁଥିବା ପ୍ରତିଟି ଘଟଣା ଏବଂ ଦୁର୍ଘଟଣା ପାଇଁ ଆମେ ସମସ୍ତେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଜଡିତ। ଯୁଗ ଯୁଗ ଧରି ସମାଜ ଜୀବନକୁ ଅଥର୍ବ କରି ରଖିଥିବା ଜାତିପ୍ରଥା, କୁସଂସ୍କାର ଓ ଅନ୍ଧବିଶ୍ୱାସ ରାଜନୈତିକ ପ୍ରତାରଣା, ଧର୍ମ ନାମରେ ଶୋଷଣ ସମାଜରେ ମୁଣ୍ଡ ଟେକିଥିବା ବିଭେଦର ପ୍ରାଚୀର, ଦଳିତ ପତିତ ନିଷ୍ପେଷିତର ଜୀବନ ସଂଗ୍ରାମ ତାହାର ଅସହାୟତା ଓ ଯନ୍ତ୍ରଣା ଥିବା ଓ ନଥିବା ମଧ୍ୟରେ ଅର୍ଥନୈତିକ ବୈଷମ୍ୟର ସୀମାରେଖା ପ୍ରଭୃତି ଅନେକ ସମସ୍ୟାରେ ଜର୍ଜରିତ "ମଣିଷ" ଅଣନିଶ୍ୱାସୀ ହୋଇ ମୁକ୍ତିଲାଭ ପାଇଁ ଶେଷହୀନ ସଂଗ୍ରାମ କରିଚାଲିଛି। ଆଧୁନିକ ମଣିଷ ହୁଏତ ଅଙ୍ଗ ଓ ଆତ୍ମାରେ ରୁଚି ଓ ପୋଷାକ

ପରିବର୍ତ୍ତନ କରିଚାଲିଛି । ଏହା ମଧ୍ୟ ଚେତନାଧର୍ମୀ ଓ ବୌଦ୍ଧିକ ହୋଇପାରିଛି । ତଥାପି ମନେହୁଏ ଆଧୁନିକ ମଣିଷ ସ୍ୱଚ୍ଛ ଜୀବନଠାରୁ ଦୂରେଇଯାଇ ସମାଜର ବାସ୍ତବ ଚିତ୍ର ଉପସ୍ଥାପନରେ ଅସମର୍ଥ ହୋଇଛି । ଆଧୁନିକତାର କ୍ଷେତ୍ରରେ ଆମର ଗତି ତଥାପି ମନ୍ଥର ଏବଂ ଏ ଦିଗରେ ଆଶାନୁରୂପ ସଫଳତା ପାଇଁ ଆମକୁ ଆହୁରି ଅଧିକ ସଚେତନ ଓ ନିଷ୍ଠା ପ୍ରଦର୍ଶନ କରିବାକୁ ହେବ, ତେବେ ଯାଇ ସମାଜର ପତିତ ଓ ଲାଞ୍ଛିତ ସାଧାରଣ ମଣିଷ ସହିତ ଏକାତ୍ମ ହେବା ଆମ୍ଭମାନଙ୍କ ପକ୍ଷେ ସମ୍ଭବ ହେବ । ଏହା ଆମର ଲକ୍ଷ୍ୟ ଓ ଆଭିମୁଖ୍ୟକୁ ଯଥାର୍ଥ ରୂପ ଦେବ । ଆଜିର ସମାଜରେ ପତିତ ଓ ଲାଞ୍ଛିତ ଚରିତ୍ରମାନେ ନିର୍ଣ୍ଣୟକାରୀ ଭୂମିକା ଗ୍ରହଣ କରିଛନ୍ତି । ଯୁଗ ଯୁଗ ଧରି ସମାଜରେ ଚାଲିଥିବା ଶୋଷଣ ଓ ନର୍ଯାତନାର ନଗ୍ନ ସ୍ୱରୂପକୁ ବର୍ତ୍ତମାନ ଅନାବୃତ୍ତ କରିବା ଆମ ସମସ୍ତଙ୍କର ଦାୟିତ୍ୱ ।

ପୁରାଣ ନାରୀକୁ ଦେବୀର ରୂପ ଦେଇ କେଉଁଠି ମହିଷାସୁରକୁ ବଦ୍ଧ କରିଛି ତ ଆଉ କେଉଁଠି ଦ୍ରୌପଦୀ ରୂପରେ ପଞ୍ଚ ସ୍ୱାମୀ ଗ୍ରହଣ କରାଇ ନିଜର ସତୀତ୍ୱ ବଞ୍ଚାଇ ପାରିଛି । ଜମ ସାଙ୍ଗେ ଲଢ଼େଇ କରି ମୃତ୍ୟୁ ମୁଖରୁ ସ୍ୱାମୀକୁ ବଞ୍ଚାଇ ଆଣିବାର ଉଦ୍ୟମ ଆଉ ସେଥିରେ ସଫଳତା ପାଇବା କେବଳ ଆମରି ପୁରାଣରେ ଦେଖିବାକୁ ମିଳେ । କିନ୍ତୁ ସମୟ ବଦଳିଛି ଏବଂ ନାରୀ ପ୍ରତି ଆଚରଣ ମଧ୍ୟ ବଦଳିଛି । ଯେଉଁ ନାରୀକୁ ଦିନେ ସମ୍ମାନ ସହକାରେ ଦେଖାଯାଉଥିଲା ସେଇ ନାରୀ ଆଜି ଦେହ ଭୋକିଲା ମଣିଷମାନଙ୍କର ଲୋଲୁପ ଦୃଷ୍ଟିର ଶିକାର ହେଉଛି । ଏହି କିଛି ଦିନ ତଳେ ଦେଶର ରାଜଧାନୀରେ ଘଟିଯାଇଥିବା ଗଣବଳାତ୍କାର ଏହାର ଜ୍ୱଳନ୍ତ ଉଦାହରଣ । ବଳାତ୍କାର ଯେ ଏପରି ନାରକୀୟ ଆଉ ବିଭତ୍ସତାର ରୂପ ନେଇପାରେ ତାହା ବିଶ୍ୱାସ ହୁଏନା । ନିର୍ଭୟାର ବିକଳତା ପହଞ୍ଚିପାରିନଥିଲା ସେଇ କୁତ୍ସିତ ମାନସିକତାର ମଣିଷମାନଙ୍କ ପାଖରେ । ନା, ବୋଧହୁଏ ମୁଁ ଭୁଲ କହିଲି । ସେମାନେ ଏତେ କୁତ୍ସିତ ଥିଲେ ଯେ ସେମାନଙ୍କୁ ମଣିଷ ନୁହେଁ ତ ପଶୁର ପଦବାଚ୍ୟ ଦେବା ଭୁଲ ହେବ । ସବୁଠାରୁ ଦୁଃଖର କଥା ସେମାନଙ୍କ ମଧ୍ୟରୁ ସବୁଠାରୁ ଅଧିକ ଜଘନ୍ୟତା ଘଟାଇଥିବା ଆସାମୀ ଜଣକ ଥିଲା ନାବାଳକ । ପ୍ରେମ ଯେ ବୟସ ମାନେନା ଏକଥା ମୁଁ ଆଉ ଆପଣମାନେ ସମସ୍ତେ ଜାଣିଛନ୍ତି । କିନ୍ତୁ ଅପରାଧ

ପ୍ରବଣତା ଯେ, ବୟସକୁ ନେଇ ପ୍ରଶ୍ନ କରେନା ତାହା ବର୍ତ୍ତମାନ ଯୁଗରେ ଆମେମାନେ ଜାଣିବାକୁ ପାଉଛୁ । ନିର୍ଭୟା ଯନ୍ତ୍ରଣାରେ ଛଟପଟ ହୋଇ ଆରପାରିକୁ ଚାଲିଗଲା, ତା' ପରିବାରଜନଙ୍କ ଆଖିରୁ ବୋଧହୁଏ ଲୁହ ସରିଆସିବଣି, ଦେଶ ସାରା ତା'ସହିତ ହୋଇଥିବା ଦୁଷ୍କର୍ମକୁ ବିରୋଧ କରି କ୍ୟାଣ୍ଡେଲ ମାର୍ଚ୍ଚର ଆଲୋକକୁ ଜନମାନସ ଭୁଲି ଯିବେଣି, ଏଭଳି ଜଘନ୍ୟ ଅପରାଧ କରିଥିବା ଏହି ଆସାମୀମାନେ ଫାଶୀ ଖୁଣ୍ଟରେ ଝୁଲିଗଲା ପରେ ବି ଦେଶର ଗଳି କନ୍ଦି ରାସ୍ତା ତ ଛାଡ ରାଜରାସ୍ତାରେ ମଧ୍ୟ ଝିଅଟିଏ ସୁରକ୍ଷିତ ନୁହେଁ । ସେ ଆସାମୀମାନଙ୍କ ମଧ୍ୟରେ ଥିବା ନାବାଳକର ଦଣ୍ଡକୁ କୋହଳ କରିଦିଆଯାଇଛି, ତା'ର ବୟସକୁ ବିଚାରକୁ ନେଇ ଯଦିଓ ତା'ର ଜଘନ୍ୟତା ବାକି ଆସାମୀମାନଙ୍କଠାରୁ ଅଧିକ ଥିଲା। ଆପଣମାନେ ଖବର କାଗଜ ଲେଉଟାନ୍ତୁ ଦେଖିବେ ପ୍ରାୟ ପ୍ରତି ଦିନ ଦେଶର କୌଣସି ନା କୌଣସି କୋଣରେ ଗୋଟିଏ ନାବାଳିକା ଧର୍ଷଣର ଶିକାର ହେଉଛି । କାଇଁ କେଉଁ ଧର୍ଷଣକାରୀ ତ ତା'ର ମାନସିକ କି ଶାରୀରିକ ଯନ୍ତ୍ରଣାର କୋହଳତାକୁ ବିଚାରକୁ ନେଉନାହିଁ । ଯେଉଁନାରୀ ଦିନେ ପୂଜାର ପଦବାଚ୍ୟ ଥିଲା ଆଜି କେବଳ ଶାରୀରିକ ଉପଭୋଗ୍ୟର ବସ୍ତୁ ଯେପରି । ପିପିଲିର ସେ ହରିଜନ ଯୁବତୀ ହେଉ କି କୋଣାର୍କ-ପୁରୀ ମେରାଇନ୍ ଡ୍ରାଇଭରେ ବସ୍ ମଧ୍ୟରେ ନବବଧୂର ବଳାତ୍କାରର କଥା ହେଉ ତାହା ସବୁ ଆମ ସମାଜ ପାଇଁ ଗୋଟିଏ ଗୋଟିଏ କଳଙ୍କିତ ଫର୍ଦ୍ଦ। ପୁରୁଷ କୈନ୍ଦ୍ରିକ ସମାଜରେ ନାରୀକୁ ଯେ ସମାନ ଅଧିକାର ଦେଇଦେଲେ ସବୁ ସମସ୍ୟାର ସମାଧାନ ହୋଇଯିବ ତାହା ଏକଦମ୍ ଭୁଲ୍। ବ୍ୟବହାର ଏବଂ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ନ ଆସିଲେ ନାରୀଟିଏ ଆଦୌ ସୁରକ୍ଷିତ ମନେ କରିବନାହିଁ । କାହିଁ କେଉଁକାଳରୁ ନାରୀ ନିର୍ଯାତିତା ଶାରୀରିକ ସ୍ତରରେ ଏବଂ ମାନସିକ ସ୍ତରରେ ମଧ୍ୟ । ତଥାପି ନାରୀ ତା'ଦାୟିତ୍ୱରୁ କେବେ ବି ଓହରିନାହିଁ । ସହନଶୀଳତା ଏବଂ ଧୈର୍ଯ୍ୟର ପ୍ରତିମୂର୍ତ୍ତୀ ସାଜି ସେ କେତେବେଳେ ମାଆ ରୂପରେ, କେତେବେଳେ ଭଗ୍ନି ରୂପରେ ଏବଂ ଆଉ କେତେବେଳେ ଯାୟା ରୂପରେ ନିଜର ଦାୟିତ୍ୱ ନିସ୍ୱାର୍ଥପର ଭାବରେ ତୁଲାଇ ଚାଲିଛି ।

ପୃଥିବୀରେ ମଣିଷ ଜାତିକୁ ସମୃଦ୍ଧ କରିବାରେ ନାରୀର ଭୂମିକା ହିଁ ପ୍ରମୁଖ । ମାଆ ହୋଇ ସନ୍ତାନମାନଙ୍କୁ ଉଚିତ୍ ଲାଳନପାଳନ କରି ମଣିଷ ପରି

ମଣିଷ କରିବାର ଚେଷ୍ଟାରେ ସେ ରୀତିମତ ଲାଗିଥାଏ । ଏହା ପରେ ବି ଆମ ସମାଜରେ ନାରୀକୁ ନେଇ ଗ୍ରହଣ କରିବାର ମାନସିକତା ବେଳେ ବେଳେ ଅଜବ ଲାଗେ । ମୁଁ ଦୃଢ଼ କଣ୍ଠରେ କହିପାରିବି ଏଠାରେ ଉପସ୍ଥିତ ଥିବା ଅଧିକାଂଶ ଶ୍ରୋତା ପୁତ୍ର ସନ୍ତାନର ଆଶାୟୀ ଥିବେ ବା ପୁତ୍ର ସନ୍ତାନର ପିତା ବା ମାତା ହୋଇଥିଲେ ସେମାନେ ମାନସିକ ସ୍ତରରେ ଖୁବ୍ ସନ୍ତୁଷ୍ଟ ଥିବେ। ଏହା ପଛରେ ଥିବା କାରଣ ସେମାନେ ମୋଠାରୁ ଅଧିକ ଜାଣିଥିବେ । ମୁଁ ଗୋଟିଏ ଝିଅ ଏବଂ ଜୀବନର ଏହି ଅଳ୍ପ ଦିନର ଯାତ୍ରା ଭିତରେ ମୁଁ ଅନୁଭବ କରିସାରିଲିଣି ମୁଁ କୌଣସି ପୁଅଠାରୁ କୌଣସି ଗୁଣରେ କାଣିଚାଏ ବି କମ୍ ନୁହେଁ । ମୁଁ ଝିଅ ବୋଲି  ମୁଁ କୌଣସି ଅଯଥା ସୁବିଧା ସୁଯୋଗ ହାସଲ କରିବାକୁ ଚାହୁଁନାହିଁ । ଓଲଟି ମୁଁ ସବୁବେଳେ ଅନେକରେ ପୁଅ ହେଉ ବା ଝିଅ ହେଉ ସୁସ୍ଥ ପ୍ରତିଯୋଗିତାରେ  ଅଧିକାର ହାସଲ୍ କରିବାର କ୍ଷମତା ସମସ୍ତଙ୍କ ପାଖରେ ରହିବା ଉଚିତ୍। କିଛି ଦିନ ତଳେ ଭାରତର ସର୍ବୋଚ୍ଚ ନ୍ୟାୟାଳୟର ଏକ ନିର୍ଦ୍ଦିଷ୍ଟ ନିର୍ଦ୍ଦେଶନାମାକୁ ସମ୍ମାନ ଦେବାକୁ ଯାଇ ଅଧିକାଂଶ କ୍ଲିନିକ୍ ଏବଂ ନର୍ସିଂହୋମରେ ଗୋଟିଏ ଫଳକ ଦେଖିବାକୁ ମିଳେ ଏବଂ ସେଥିରେ ଲେଖା ଥାଏ 'ଗର୍ଭସ୍ଥ ଶିଶୁର ଲିଙ୍ଗ ନିରୂପଣ କରିବା ଏକ ଧାତବ୍ୟ ଅପରାଧ'। କିନ୍ତୁ ଫଳ ହୁଏ ଠିକ୍ ଓଲଟା। ମାଆ ପେଟରେ ନିଷ୍ପାପ ଶିଶୁଟି ଯେତେବେଳେ ଦୁନିଆଁ ଦେଖିବା ପାଇଁ ବିକଳ ହେଉଥାଏ ଠିକ୍ ସେତିକି ବେଳେ ତା' ଦୋଷ ଜାଣିବା ଆଗରୁ ଗର୍ଭ ଭିତରେ ତା' ଦୁନିଆଁକୁ ସୀମିତ କରିଦିଆଯାଏ। ସେ କାହାକୁ ପ୍ରଶ୍ନ କରିପାରେନା ତା'ପ୍ରତି ଘଟିଥିବା ଏହି କ୍ରୁରତାକୁ ନେଇ। ତା'ର ଭୁଲ ସେ ଗର୍ଭରେ ଜନ୍ମ ନେଇଛି କନ୍ୟାଟିଏ ହୋଇ। ବାହାର ଅନାଦର ଦୁନିଆରେ ତାକୁ କିଏ ଆଦର କରିବାକୁ ନାହାନ୍ତି କି ସ୍ୱାଗତ କରିବାକୁ ନାହାନ୍ତି। ସେ ନିଷ୍ପାପ କନ୍ୟା ହୁଏତ ଦିନେ କାହାର ମାଆ, କାହାର ଭଉଣୀ ଏପରିକି କାହାରି ପ୍ରେମିକା ହେବାର ସୌଭାଗ୍ୟ ପାଇଥାନ୍ତା। ସଂପର୍କର ଏସବୁ ନାଁ ଜାଣିବା ଆଗରୁ ଦାମ୍ପତ୍ୟର ମଧୁର ସମ୍ପର୍କରୁ ସୃଷ୍ଟି ହୋଇଥିବା ସଂପର୍କର ଏହି ସାକ୍ଷୀର ଆଖିକୁ ବୁଜି ଦିଅନ୍ତି ସେହି ନିଷ୍ଠୁର ବାପାମାଆ ।  ଝିଅ ଜନ୍ମ ତ ଅଭିଶାପ ବୋଲି ମନାଯାଏ କିନ୍ତୁ ଗର୍ଭରେ କନ୍ୟା

ସନ୍ତାନ ଧାରଣ କରିବା ଯେ ଅଭିଶାପ ତାହା ଆଧୁନିକ ସମାଜ ଆମକୁ ଚେତାଇ ଦେଇସାରିଛି । ଯେତେବେଳେକି ଏ ଦୁନିଆ ଦେଖିସାରିଲାଣି ଇନ୍ଦିରା ଗାନ୍ଧୀ, ମଦରଟେରେସା, ଝାନ୍‌ସି ରାଣୀ, କଳ୍ପନା ଚାୱାଲା, ସାନିଆ ମିର୍ଜା, ପ୍ରତିଭା ପାଟିଲ, ସରୋଜିନୀ ନାଇଡୁ ପ୍ରଭୃତି ପ୍ରତିଭାବାନ୍ ମହିଳାମାନଙ୍କୁ। ସେମାନେ ସେମାନଙ୍କର ବ୍ୟକ୍ତିତ୍ୱ ତଥା କାର୍ଯ୍ୟଶୈଳୀ ମାଧ୍ୟମରେ ପ୍ରମାଣ କରିସାରିଛନ୍ତି। ସେମାନେ ପୁରୁଷଠାରୁ କୌଣସି ଗୁଣରେ କମ୍ ନୁହଁନ୍ତି । ସେମାନଙ୍କର ପିତାମାତା ଏପରି ମହାନ୍ କନ୍ୟାସନ୍ତାନର ଅଧିକାରୀ ହୋଇ ନିଜକୁ ଗର୍ବ ମନେ କରୁଥିବେ । କନ୍ୟା ଭ୍ରୁଣ ହତ୍ୟା ଏକ ବିଭତ୍ସ କାଣ୍ଡ । ଗର୍ଭରେ ସନ୍ତାନଟିଏ ସୃଷ୍ଟି ହେବା କ୍ଷଣି ଦୁନିଆଁ ଦେଖିବାର ତା'ର ପୂର୍ଣ୍ଣ ଅଧିକାର ଅଛି । କେବଳ ଲିଙ୍ଗର ତାରତମ୍ୟ ପାଇଁ ଯେ ସେ ଦୁନିଆଁକୁ ଆସିବ କି ନାହିଁ ନିର୍ଦ୍ଧାରଣ ହେବା ଉଚିତ୍ ନୁହେଁ ।

ନାରୀ ଭଗବାନଙ୍କର ସବୁଠାରୁ ସୁନ୍ଦର ସୃଷ୍ଟି । ଏହି ସୁନ୍ଦର ସୃଷ୍ଟିକୁ କଦର୍ଥ ଚାହାଣୀରେ ଚାହିଁବା ଅର୍ଥ ଭଗବାନଙ୍କ ସୃଷ୍ଟିକୁ ଅପମାନ କରିବା । ତଥାପି ନାରୀ ଆଜି କେଉଁଠାରେ ବି ନିଜକୁ ସୁରକ୍ଷିତ ମନେ କରୁନାହିଁ । ପୁରୁଷ ସମାଜ ସହ ପ୍ରତିଯୋଗିତା କରି ସଫଳତାର ଗୋଟିଏ ପରେ ଗୋଟିଏ ପାହାଚ ଚଢୁଥିବା ସତ୍ତ୍ୱେ କର୍ମ କ୍ଷେତ୍ରରେ ମହିଳାଙ୍କୁ ଖାଲି ଘୃଣିତ ଚକ୍ଷୁ୍ୟରେ ଦେଖାଯାଏନି ତ ସେମାନଙ୍କୁ ଅସଦାଚରଣ କରିବା ଯେପରି ପୁରୁଷ ସହକର୍ମୀ ବା ଉପରିସ୍ଥ କର୍ମଚାରୀଙ୍କର ଏକ ଜନ୍ମଗତ ଅଧିକାର। ବିଭିନ୍ନ ପ୍ରକାର ପ୍ରଲୋଭନ ଦେଖାଇ କର୍ମ କ୍ଷେତ୍ରରେ ମହିଳା କର୍ମଚାରୀଙ୍କ ନିକଟବର୍ତ୍ତୀ ହେବାରେ ସଫଳ ହୁଅନ୍ତି ଏହିପରି କଦର୍ଥ ଚିନ୍ତାଧାରା ରଖିଥିବା ପୁରୁଷମାନେ । ଆଉ ସୁଯୋଗ ପାଇଲାମାତ୍ରେ ଝାମ୍ପି ପଡନ୍ତି ସେମାନଙ୍କର ଦେହ ସୁଖ ମେଣ୍ଟାଇବା ପାଇଁ । ସେମାନଙ୍କ ବିଚାରକୁ ଆସେନା ସେମାନଙ୍କ କାମନାର ଶିକାର ହୋଇଥିବା ନାରୀଟି ଏପରି ଭାବନା ଏବଂ ଯନ୍ତ୍ରଣାକୁ କିପରି ହଜମ କରିବ। ଆଇନ କାନୁନ୍‌ର ଲକ୍ଷ୍ମଣରେଖା ଡେଇଁବାରେ ସେମାନେ ତିଳେମାତ୍ର ଦ୍ୱିଧା କରନ୍ତି ନାହିଁ । ମହିଳାମାନଙ୍କ ପ୍ରତି ହେଉଥିବା ଏଭଳି ଅସଦାଚରଣ ପାଇଁ ଭାରତୀୟ ପିଙ୍ଗଳକୋର୍ଡ ଆଇନ୍‌ରେ କଠୋର ନିୟମ ପ୍ରଣୟନ

କରାଯାଇଛି । ଏପରିକି ମହିଳା କର୍ମଚାରୀଙ୍କର ଅନୁମତିରେ ମଧ୍ୟ ତାଙ୍କୁ ସ୍ପର୍ଶ କରିବା ଏକ ଦଣ୍ଡନୀୟ ଅପରାଧ। ଛୁଇଁବା ତ ଦୂରେଥାଉ କୌଣସି ପ୍ରକାରର ବିରୋଧାତ୍ମକ ଇଙ୍ଗିତ ମଧ୍ୟ ଏହି ନିୟମର ପରିସୀମା ମଧ୍ୟରେ ଆସିଥାଏ । ଏହା ପରେ ମଧ୍ୟ କ୍ୟାବିନେଟ ମନ୍ତ୍ରୀଙ୍କର ମହିଳା ପ୍ରାଇଭେଟ ସେକ୍ରେଟାରୀଙ୍କଠାରୁ ଆରମ୍ଭ କରି ଅନ୍ତର୍ଜାତୀୟ କମ୍ପାନୀର ସିଏମ୍‌ଡିଙ୍କ ପଦସ୍ଥ ମହିଳା କର୍ମଚାରୀ ଏପରି ଅଭିଯୋଗ ଆଣିବା ଏକ ଲଜ୍ୟାଜନକ ବ୍ୟାପାର। ଏହାଠାରୁ ଅଧିକ ଲଜ୍ୟା ଜନକ ହେଉଛି ଯେତେବେଳେ କ୍ଷମତାର ଅପବ୍ୟବହାର କରି ଏହିଭଳି ଉଚ୍ଚପଦସ୍ଥ ବ୍ୟକ୍ତିତ୍ୱମାନେ ନିର୍ଦ୍ଦୋଶରେ ନ୍ୟାୟାଳୟରୁ ଖସି ଯାଇପାରନ୍ତି । କିନ୍ତୁ କିଛି ଦିନ ତଳେ ଉତ୍ତର ପ୍ରଦେଶର କବି ମଧୁମିତା ହତ୍ୟାକାଣ୍ଡରେ ଦୋଷୀ ସାବ୍ୟସ୍ତ ହୋଇ ଉତ୍ତର ପ୍ରଦେଶର ଜଣେ କ୍ୟାବିନେଟ ମନ୍ତ୍ରୀ ଜେଲ୍ ଦଣ୍ଡ ଭୋଗ କରୁଛନ୍ତି । କିନ୍ତୁ ଏପରି ଦଣ୍ଡବିଧାନ ଯେ କେତେ ଦୃଷ୍ଟାନ୍ତମୂଳକ ସାବ୍ୟସ୍ତ ହେଉଛି ତାହା ଏବେ ମଧ୍ୟ କର୍ମଜିବୀ ମହିଳାମାନଙ୍କୁ ସନ୍ଧିହାନ ଘେର ମଧ୍ୟରେ ରଖିଛି । ଏପରି କହିବାର ତାତ୍ପର୍ଯ୍ୟ ଅସଦାଚରଣରେ  ଆଜୀବନ କାରାଦଣ୍ଡ ପରି କଠୋର ଦଣ୍ଡରେ ଦଣ୍ଡିତ ହେବା ପରେ ମଧ୍ୟ ଏହି ନିକଟରେ ହରିୟାଣାର ରାଜନୈତିକ ବ୍ୟକ୍ତିତ୍ୱ ଶ୍ରୀଯୁକ୍ତ କାଣ୍ଡାଙ୍କର କାର୍‌ନାମା ବେଶ୍ ଚିନ୍ତାଜନକ। ତେବେ ଆଇନ୍‌କୁ ସୁଦୃଢ଼ କରିବାଠାରୁ ଅଧିକ ଗୁରୁତ୍ତର ବିଷୟ ହେଉଛି ପୁରୁଷମାନଙ୍କର ମହିଳା କର୍ମଚାରୀଙ୍କୁ ନେଇ ମାନସିକତାରେ ପରିବର୍ତ୍ତନ। ଅଧିକାଂଶ ମହିଳା କର୍ମକ୍ଷେତ୍ରରେ ଅପମାନିତା ଏବଂ ନିର୍ଯ୍ୟାତିତ ହେଲା ପରେ ମଧ୍ୟ ଲୋକଲଜ୍ୟା ଭୟରେ ମୁହଁ ଖୋଲୁନାହାନ୍ତି । ଯାହା ଫଳରେ କି ଏଭଳି ଘଟଣାର ପ୍ରକୃତ ସଂଖ୍ୟା ଆମ ସମ୍ମୁଖରେ ଉପଲବ୍ଧ ହେଉନାହିଁ। ଶୋଷଣର ଶିକାର ହୋଇ ଅଧିକାଂଶ ସମୟରେ ମହିଳାଟି ଆତ୍ମହତ୍ୟା ବା ହତ୍ୟାର  ଶିକାର ହେଲା ପରେ ଘଟଣାଟି ଆମ ସମ୍ମୁଖକୁ ଆସୁଛି । ନେଡିଗୁଡ କହୁଣୀକୁ ବୋହି ଗଲା ପରି ସେତେବେଳକୁ ସମାଧାନର ଆଉ କୌଣସି ରାସ୍ତା ରହୁନାହିଁ । ଏହାର ସମାଧାନ ମୋ ମତରେ ସମ୍ଭବତଃ ଦୁଇଟି ଉପାୟରେ କରାଯାଇପାରିବ ପ୍ରଥମତଃ ପୁରୁଷ ସମାଜର ମହିଳାମାନଙ୍କୁ ନେଇ ଚିନ୍ତାଧାରାରେ ପରିବର୍ତ୍ତନ

ତଥା ମହିଳାଙ୍କର କାର୍ଯ୍ୟଦକ୍ଷତା ଏବଂ ଭାବନାକୁ ସମ୍ମାନ ପ୍ରଦର୍ଶନ । ଦ୍ୱିତୀୟତଃ ମହିଳା ଯଦି ଶୋଷଣର ଶିକାର ହେଉଛି ସେ କଦାଚିତ୍ ବିଳମ୍ବ ନକରି ଯେତେଶୀଘ୍ର ସମ୍ଭବ ଉପଯୁକ୍ତ ଆଇନ୍‌ର ଆଶ୍ରୟ ନେବା ଉଚିତ୍ ।

ଏ କିଛି ଦିନ ତଳେ ନାରୀ ନିର୍ଯାତନାର ଆଉ ଏକ ନୂଆ ଫର୍ଦ୍ଦ ଦେଖିବାକୁ ମିଳିଛି । ଏହାର ନାମକରଣ କରାଯାଇଛି 'ସମ୍ମାନ ପାଇଁ ମୃତ୍ୟୁ' (ଅନରକିଲିଙ୍ଗ୍) । ଯୁଗ ପରେ ଯୁଗ ବିତାଇ ଆମ୍ଭେମାନେ ଏବେ ଏକବିଂଶ ଶତାବ୍ଦୀରେ ପାଦ ଦେଇଛୁ । ଆମ ମାନସିକ ଚିନ୍ତାଧାରାରେ ଖୁବ୍ ପରିବର୍ତ୍ତନ ଆସିଛି ଏବଂ ଆସିବା ଉଚିତ୍ ମଧ୍ୟ । କିନ୍ତୁ କିଛି କିଛି କଟ୍ଟରପନ୍ଥୀ ଚିନ୍ତାଧାରାର ସମାଜରେ ବଞ୍ଚୁଥିବା ବ୍ୟକ୍ତି ବିଶେଷ ଜାତି ତଥା ଆର୍ଥିକ ସ୍ୱଚ୍ଛଳତାକୁ ସମ୍ମାନ ଦେବାକୁ ଯାଇ ଏପରି ଅପରାଧ କରିବାପାଇଁ ପଛାଉନାହାନ୍ତି । ସେମାନଙ୍କର ପ୍ରାପ୍ତ ବୟସ୍କ କନ୍ୟା ଯିଏକି ମାନସିକ ତଥା ଶାରୀରିକ ସ୍ତରରେ ଉପଯୁକ୍ତ ସୋପାନ ଅତିକ୍ରମ କରିସାରିଥାନ୍ତି ତଥା ସ୍ୱୟଂସଂପୂର୍ଣ୍ଣ ହୋଇସାରିଥିଲେ ମଧ୍ୟ ନିଜ ଇଚ୍ଛାନୁସାରେ ଜୀବନ ସାଥୀ ବାଛିବା ସେମାନଙ୍କ ପାଇଁ ଅପରାଧ ଯେମିତି । ଆଉ ଏହି ଅପରାଧ ବଳରେ ସେମାନେ ସେମାନଙ୍କର ପରିବାରର ସଦସ୍ୟଙ୍କ ଦ୍ୱାରା ନୃଶଂସ ଭାବରେ ପ୍ରାଣ ହରାନ୍ତି । ସତରେ ସମାଜ ଦିନକୁ ଦିନ ଅପରାଧର ନୂଆ ନୂଆ ରୂପ ଦେଖି ନିଜକୁ ନିଜେ ଧିକ୍କାର କରୁଥିବ ନିଶ୍ଚୟ । ଏପରି ଅପରାଧ ପ୍ରବଣତା ବଡ ବଡ ସହରମାନଙ୍କରେ ପ୍ରଥମେ ଦେଖାଯାଉଥିଲା କିନ୍ତୁ ବର୍ତ୍ତମାନ ଏହା ଛୋଟ ଛୋଟ ସହରକୁ ଏପରିକି ଗାଆଁ ଗଣ୍ଡାକୁ ବ୍ୟାପିଗଲାଣି ମଧ୍ୟ । ପ୍ରାପ୍ତ ବୟସ୍କା ଝିଅର ମନଲାଖି ଜୀବନସାଥୀ ବାଛିବାର ପୂର୍ଣ୍ଣ ଅଧିକାର ରହିଛି କାରଣ ତାକୁ ହିଁ ସେ ପୁରୁଷ ସାଙ୍ଗରେ ଅବଶିଷ୍ଟ ଜୀବନ ବିତାଇବାର ଥାଏ । ତେଣୁ ସେ ଯଦି ତା'ପରି ମାନସିକତାର ପୁରୁଷକୁ ଜୀବନସାଥୀ ରୂପେ ପାଇପାରୁଛି ତେବେ ତାକୁ ଗ୍ରହଣ କରିବାରେ ଭୁଲ ରହିଲା କେଉଁଠି ? ବାପାମାଆମାନେ ସେମାନଙ୍କର ଅହଂକାରକୁ ପଛ କରି ଝିଅର ଆଗ୍ରହ ଏବଂ ଆବେଗ ପ୍ରତି ସମ୍ମାନ ଦେବା ଉଚିତ୍ ।

ଦିନ ଥିଲା ଝିଅ ବାହା ହୋଇ ଶାଶୁ ଘରକୁ ଆସୁଥିବା ସମୟରେ ଝିଅର ପରିବାର ସେମାନଙ୍କର ସାମର୍ଥ୍ୟ ଅନୁଯାୟୀ ଝିଅକୁ ଶାଶୁ ଘରେ ଚଳିବା

ପାଇଁ ବିଭିନ୍ନ ଉପହାର ଦେଉଥିଲେ। କାଳକ୍ରମେ ଏହା ଯୌତୁକର ରୂପ ନେଲା ଏବଂ ଝିଅର ଶାଶୁଘର ସେମାନଙ୍କର ମନମୁତାବକ ସାମଗ୍ରୀ ପାଇଁ ଝିଅ ଘର ପରିବାରକୁ ବାଧ୍ୟ କରିବାର ଆରମ୍ଭ କଲେ ଏବଂ ଏହା ଏବେ ଏକ ଘୃଣିତ ପ୍ରଥାର ରୂପ ନେଇଛି । ଝିଅର ପରିବାର ସେମାନଙ୍କ ସାମର୍ଥ୍ୟ ବାହାରକୁ ଯାୟୀ ପୁଅ ଘରର ଇଚ୍ଛା ମୁତାବକ ଉପହାର ନଦେଇ ପାରିଲେ ଝିଅ ଉପରେ ଅକଥନୀୟ ଅତ୍ୟାଚାର କରାଯାଉଛି ।  ଅତ୍ୟାଚାରର ଯନ୍ତ୍ରଣା ସହ୍ୟ ନକରିପାରି ପାଦରୁ ଅଳତାର ଦାଗ ଲିଭିବା ଆଗରୁ ନବବଧୂଟି ଆତ୍ମହତ୍ୟାର ରାସ୍ତା ବାଛି ନେଉଛି । ଏହି ଆତ୍ମହତ୍ୟାକୁ ଦୁର୍ଘଟଣାର ରୂପ ଦେବାକୁ ଯାୟୀ କେତେବେଳେ ରୋଷେଇ ଘରେ ଷ୍ଟୋଭ ଫାଟୁଛି ତ ଆଉ କେତେବେଳେ ମୃତ ନବବଧୂକୁ ସିଲିଂ ଫ୍ୟାନ୍‌ରେ ଝୁଲିବାକୁ ପଡୁଛି ।

ପୁରାଣରେ ନାରୀକୁ ଦେବୀର ସମ୍ମାନ ଦିଆଯାଇ ତାକୁ ସମର୍ପଣର ଆଉ ଏକ ରୂପ ଭାବେ ଅଭିହିତ କରାଯାଇଥିଲା । କିନ୍ତୁ ଆଜିର ସମୟରେ ବାପଘର ଏରୁଣ୍ଡି ବନ୍ଧ ଡେଇଁ ଶାଶୁ ଘର ଦୁଆରେ ପହଞ୍ଚିବା ପାଇଁ ଝିଅଟିର ମୁଲଚାଲ କରାଯାଉଛି । ଯୌତୁକ ବିରୋଧି ଆଇନ୍ ଦିନକୁ ଦିନ ଯେତିକି କଠୋର ହେଉଛି ତା'ଠାରୁ ଅଧିକ ଯୌତୁକ ନିଆଁରେ ଜଳି ମରୁଛନ୍ତି ନବବଧୂମାନେ । ସବୁଠାରୁ ଯନ୍ତ୍ରଣାଦାୟକ ବିଷୟ ହେଉଛି ଯେଉଁ ରାଜନୈତିକ ନେତାମାନେ ବିଧାନସଭା ବା ପାର୍ଲାମେଣ୍ଟରେ ଯୌତୁକ ବିରୋଧରେ ଆଇନ୍ ପ୍ରସ୍ତୁତ କରୁଛନ୍ତି ସେମାନଙ୍କର ବୋହୁମାନେ ମଧ୍ୟ ଯୌତୁକର କଳାଛିଟାଠାରୁ ଦୂରେଇ ପାରିନାହାନ୍ତି । ସାଧାରଣ ଜନତାଙ୍କ କଥା ଦୂରେଥାଉ ।

ପୂର୍ବ କଥିତ ସମସ୍ତ ନାରୀ ନିର୍ଯାତନାକୁ ଆଖି ଆଗରେ ରଖି ଭାରତ ସରକାର କିଛି ଦିନ ତଳେ ଘରୋଇ ହିଂସା ଆଇନ ପ୍ରଚଳନ କରିଛନ୍ତି । ଏହାର ମୂଳ ଉଦ୍ଦେଶ୍ୟ ହେଉଛି ମହିଳାମାନଙ୍କୁ ଆମ ସମାଜରେ ଉପଯୁକ୍ତ ସମ୍ମାନ ଦେବାସହ ସେମାନଙ୍କ ଅଧିକାର ବିଷୟରେ ସେମାନଙ୍କୁ ସଚେତନ କରାଇବା । କିନ୍ତୁ ଏପରି ଆଇନ୍‌କାନୁନ୍ କେବଳ ଅଦାଲତର ଚାରିକାନ୍ଥ ଭିତରେ ଯେପରି ବନ୍ଦୀ ହୋଇଯାଉଛି ନହେଲେ ଛପା ଅକ୍ଷର ହୋଇ କାନୁନ୍‌ର ଦଲିଲ୍‌ରେ ସୀମିତ ହୋଇ ରହିଯାଉଛି । ପାରିବାରିକ ହିଂସା ଆଇନ୍ ଆଜିକାଲି

ସମାଜରେ ଘଟୁଥିବା ନାରୀ ହିଂସାକୁ ପ୍ରତିରୋଧ କରିବା ପାଇଁ ଏକ ଉଚିତ୍ ପଦକ୍ଷେପ । କିନ୍ତୁ ବାସ୍ତବିକ ଭାବରେ ଦେଖିବାକୁ ଗଲେ ଆମେ ଏଥିରେ କେତେ ସଫଳ ହୋଇଛୁ ତାହା ଏବେ ବି ପ୍ରଶ୍ନବାଚୀ । ୪୫ବର୍ଷର ଦାମ୍ପତ୍ୟ ଜୀବନ ପରେ ଡାକ୍ତର ସ୍ୱାମୀ ସ୍ତ୍ରୀକୁ ଖଣ୍ଡ ବିଖଣ୍ଡିତ କରି ହତ୍ୟା କରୁଛି, ଆଉ କେଉଁଠି ରାଜନୈତିକ ପୃଷ୍ଠଭୂମିରେ ନାମ କମାଇଥିବା ରାଜନେତା ପତ୍ନୀ ହତ୍ୟାର ଆରୋପରୁ ବଞ୍ଚିବା ପାଇଁ ପତ୍ନୀର ମୃତ ଦେହକୁ ତନ୍ଦୁର ଚୁଲ୍ଲୀରେ ଜାଳିବାର ଉଦ୍ୟମ କରୁଛି । ତେବେ ଏପରି ନିୟମ କାନୁନ୍ ରହି ଲାଭ ବା କ'ଣ ? କାନୁନ୍‌ର ହାତ ଯେତେ ଲମ୍ବା ହେଲେ ମଧ୍ୟ ସେଥିରୁ ମୁକୁଳିଯିବା ପାଇଁ ଅପରାଧି ତା'ର ପ୍ରୟାସ ଜାରି ରଖିଥାଏ। ଯେଉଁଠି ଉଚିତ୍ ନ୍ୟାୟ କରାଯାଇ ଦୋଷୀକୁ ଦଣ୍ଡିତ କରାଯାଉଛି ସେ ଦଣ୍ଡର ଫଳାଫଳ ସେହି ଦୁର୍ଘଟଣାରେ ହିଁ ସୀମିତ ରହୁଛି ଏବଂ ସେପରି ଦୁର୍ଘଟଣା ପୁନର୍ବାର ନଘଟିବାର ପ୍ରୟାସରେ ସେପରି ଦଣ୍ଡାଦେଶ ଫଳପ୍ରଦ ହେଉନାହିଁ।

ଆପଣଙ୍କ ସମ୍ମୁଖରେ ଆଜି ଯେଉଁ ବିଷୟବସ୍ତୁ 'ନାରୀ; ନିର୍ଯାତନାରୁ ବଞ୍ଚିବା ପାଇଁ ଆଜିର  ଆଇନ୍ ଯଥେଷ୍ଟ କି ?' ପାଇଁ ମୋତେ ସ୍ୱାଧୀନ ଭାବରେ ମତବ୍ୟକ୍ତ କରିଥିବାର ସୁଯୋଗ ମିଳିଥିବାରୁ ମୁଁ ସମସ୍ତଙ୍କ ନିକଟରେ କୃତଜ୍ଞ। ଶେଷରେ ଏତିକି କହିବି ନିୟମକାନୁନ୍ କଠୋର ହୋଇଗଲେ ଯେ ନାରୀ ନିର୍ଯାତନା କମିଯିବ ବା ନିୟମକାନୁନ୍ କୋହଳ ହୋଇଗଲେ ନାରୀ ନିର୍ଯାତନା ବଢ଼ିଯିବ ଏପରି କୌଣସି ଯୁକ୍ତି ନାହିଁ । ନାରୀ ପ୍ରତି ପ୍ରତିଟି ପୁରୁଷର ଆଦର ଏବଂ ସମ୍ମାନ ରହିବା ଉଚିତ୍ । ନାରୀ ବିପଦରେ ପଡିଲେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସଭିଏଁ ଏକ ସ୍ୱରରେ ସହଯୋଗର ହାତ ବଢ଼ାଇବା ଉଚିତ୍ । ନାରୀ ସବଳା ହେଲେ ଜାତି ସବଳ ହେବ, ନାରୀ ସୁଦୃଢ଼ା ହେଲେ ସମାଜ ସୁଦୃଢ଼ ହେବ। ନାରୀ ଦୃଢ଼ ମନୋବଳା ହେଲେ ଭବିଷ୍ୟତ ପିଢ଼ି ଦୃଢ଼ ମନୋବଳ ନେଇ ନୂଆ ପୃଥିବୀ ଗଢ଼ିବାର ସାହାସ ଯୁଟାଇପାରିବ। ଆଶା ରଖୁଛି ଆପଣମାନେ ଆଜିଠାରୁ ଜୀବନରେ କେବେ ନାରୀକୁ ଅସମ୍ମାନ କରିବେ ନାହିଁ ବୋଲି ପ୍ରତିଜ୍ଞା କରିବେ। ଜୟହିନ୍ଦ୍।"...

ଏତେ ଭୀଡ ଭିତରେ ସବୁକିଛି ନିସ୍ତବ୍ଧ ହୋଇଯାଇଥିଲା ଶୁଭଦାର ଆବେଗପୂର୍ଣ୍ଣ ବକ୍ତବ୍ୟ ଆଗରେ । ଏତେ କମ୍ ବୟସର ଝିଅଟି ମୁହଁରୁ ଏତେ

ବେଶୀ ବିପ୍ଳବର ପ୍ରତିଧ୍ୱନୀ ଶୁଣୁଥିବା ସମସ୍ତ ସ୍ରୋତା ତଟସ୍ଥ ହୋଇ ଚାହିଁ ରହିଥିଲେ ଶୁଭଦା ଆଡେ । ବକ୍ତବ୍ୟ ଶେଷ କରି ମଞ୍ଚରୁ ଓହ୍ଲାଇ ଆସିବାବେଳେ ଅତିଥି ଭାବେ ବସିଥିବା ବରୁନ୍ ଛିଡା ହୋଇ ଯାଇ ଶୁଭଦାକୁ ଶୁଭେଚ୍ଛା କରିବା ଉଦ୍ଦେଶ୍ୟରେ ତାଳି ମାରିବାକୁ ଆରମ୍ଭ କଲେ । ପଛକୁ ମୋଡି ଶୁଭଦା ଦେଖିଲା ବରୁନ୍‌କୁ ଆଉ ପ୍ରଥମ ଥର ପାଇଁ ଦୁହିଁଙ୍କର ଆଖି ମିଶିଥିଲା ସେହି ମୁହୂର୍ତ୍ତରେ । ଶୁଭଦା ଆଉ କିଛି ଭାବିବା ଆଗରୁ ସ୍ରୋତାମାନଙ୍କର କରତାଳିରେ ସେ ଅନ୍ୟମନସ୍କ ହୋଇଗଲା । ଉପସ୍ଥିତ ସମସ୍ତ ସ୍ରୋତାଙ୍କ ମୁହଁରେ ଶୁଭଦା ଆଉ ତା'ର ବକ୍ତବ୍ୟର ଭୁରି ଭୁରି ପ୍ରଶଂସା ।

କ୍ରମଶଃ ସଭାମଣ୍ଡଳି ପ୍ରକୃତିସ୍ଥ ହେଲା, ସଭାକାର୍ଯ୍ୟ ପୁନଶ୍ଚ ଆରମ୍ଭ ହେଲା। ଶୁଭଦାର ବକ୍ତବ୍ୟ ପରେ ବକ୍ତାମାନଙ୍କର ବକ୍ତବ୍ୟର ଅନ୍ତ ଘଟିଲା । ବର୍ତ୍ତମାନ ଅତିଥିମାନେ ସେମାନଙ୍କର ବକ୍ତବ୍ୟ ରଖିବା ଆରମ୍ଭ କରିବେ । ବରୁନ୍ କିନ୍ତୁ ଥିଲା ଆଉ ଗୋଟିଏ ଦୁନିଆଁରେ । ତା'ଆଖି ଶୁଭଦା ପାଖରୁ ହଟୁନଥିଲା । ବରୁନ୍‌ର ଏପରି ଆଚରଣକୁ ଲକ୍ଷ କରି ଶୁଭଦା ମନେ ମନେ କହିଲା ଗୋଟିଏ ସଭାରେ ଅତିଥି ଭାବରେ ମଞ୍ଚାସୀନ ହେଲା ପରେ ଜଣେ ବକ୍ତାଙ୍କୁ ଏପରି ଚାହାଣୀରେ ଚାହିଁବା କେତେ ଦୂରରେ ଶାଳୀନତାର ପରିଚୟ ଦିଏ । ବରୁନ୍ କିନ୍ତୁ ସେଇମିତି ଗାଡେଇ ଗାଡେଇ ଚାହୁଁଥାଏ ଶୁଭଦା ଆଡକୁ । ଅନନ୍ୟୋପାୟ ନହୋଇ ଶୁଭଦା ବରୁନ୍ ଆଡେ ଆଉ ଚାହିଁଲା ନାହିଁ । କିନ୍ତୁ ଶୁଭଦାର ସାଙ୍ଗମାନେ ନଛୋଡ ବନ୍ଧା। ତାଙ୍କ ସାଙ୍ଗକୁ ବରୁନ୍ ଭଳି ଜଣେ ସୁନ୍ଦର କମନୀୟ ପୁରୁଷର ଆକର୍ଷଣ ଥିବାର ଦେଖି ସେମାନେ ଉଲ୍ଲସୀତ ହୋଇ ଉଠିଲେ । ତାଙ୍କ ଭିତରୁ ଟିନା କହିଲା, 'ଶୁଭଦା ସେ ଲୋକଟା ତୋତେ ରସି ଗଲାରେ...'। ମାନସୀ ବଦ୍‌ମାସୀ ଠାଣିରେ କହିଲା 'ୱାଉ କ୍ୟା ହ୍ୟାଣ୍ଡସମ୍ ହେଁ ୟାର୍।' ଏଇ ଦୁଇ ଜଣଙ୍କ ଫାଜିଲାମି ଦେଖି ମୀନା କ'ଣ ଆଉ ଚୁପ୍ ରହିବା ପିଲା; ସେ ମଧ୍ୟ କହିଉଠିଲା 'ଇସ୍ ମୋତେ ଏମିତି କିଏ ରସି ଯାଆନ୍ତା କି ?' ସାଙ୍ଗସାଥୀମାନଙ୍କର ଏପରି ଥଟ୍ଟାଟାପରା ଶୁଣି ଶୁଭଦା ସେମାନଙ୍କୁ ଆକଟ କରେ, 'ଛି' ତୁମମାନଙ୍କୁ ଟିକେ ଲାଜ ସରମ ଅଛି ନା ନାହିଁ ? ଜଣେ ଭଦ୍ର ଲୋକଙ୍କୁ ଏଭଳି ଆକ୍ଷେପ କରିବା କ'ଣ ଠିକ୍ ହେଉଛି। ଚୁପ୍ କର ଏ ସବୁ।'

ସାଥିମାନଙ୍କ କଥାକୁ ଖୁବ ସହଜ ଭାବରେ ଆଡେଇ ଦେଲା ଶୁଭଦା କିନ୍ତୁ ଦେଖିଲା ଲୋକଟା ସତରେ ତାକୁ ଏକ ଲୟରେ ଚାହିଁ ରହିଛି। ସେ ମନେ ମନେ ଭାବିଲା କିଛି ଦୂରରେ ବସିଥିବା ଚଣାବାଲି ବୁଢ଼ୀ ପାଖରୁ ଚଣା ଆଣି ସେଇ ଲୋକର ସେହି ଢ଼ିମା ଢ଼ିମା ଆଖି ଉପରକୁ ଫିଙ୍ଗି ଦିଅନ୍ତା କି? ଲୋକଟାର ଆଖି ଦୁଇଟା ଖୁବ୍ ମନଲୋଭା ବୋଲି ସେ କ'ଣ ଏମିତି ଚାହିଁ ରହିଥିବ? ଦାନ୍ତ କଟମଟ କରି ଭିତରେ ଭିତରେ ଖୁବ୍ ରାଗୁଥାଏ ଶୁଭଦା। ଜିଲାପାଳଙ୍କର ଭାଷଣ ଚାଲିଥାଏ। ଅଧା ଭାଷଣରୁ ଉଠିଯିବା ମଧ୍ୟ ଅଶୋଭନୀୟତାର ପରିଚୟ ହେବ। ଟିନା, ମାନସି ଆଉ ମୀନା କିନ୍ତୁ ଖୁବ୍ ଆନନ୍ଦ ଉପଲବ୍ଧି କରୁଥାନ୍ତି ଏବଂ ମଝି ମଝିରେ ଟାହିଟାପରା ହେଉଥାଆନ୍ତି। ଆଲୋଚନା ଚକ୍ରରେ କଲେଜ ତରଫରୁ ଟିଫିନ୍ ବ୍ୟବସ୍ଥା ହୋଇଥାଏ। କଲେଜର ପିଅନମାନେ ଜଳଖିଆ ଦେବା ଆରମ୍ଭ କଲେ। ଅତିଥିଙ୍କ ଭାଷଣ ଚାଲିଥାଏ । ପ୍ୟାକେଟ ବଣ୍ଟା ସାଙ୍ଗକୁ ଲୋକଙ୍କର ଖାଇବା ମଧ୍ୟ ଆରମ୍ଭ ହୋଇଗଲା । ଶୁଭଦାକୁ ମିଠା ଭାରି ଭଲ ଲାଗେ। ଯେମିତି ସେ ଖାଇବାକୁ ମିଠା ହାତକୁ ନେଲା ତାକୁ ମିଠା ଭିତରେ ସେଇ ଲୋକଟାର ମୁହଁ ଦେଖାଗଲା। ସମ୍ମୁଖକୁ ଚାହିଁଲା ଦେଖିଲା ସତରେ ଏବେବି ସେଇ ଲୋକ ସେମିତି ଚାହିଁ ରହିଛି। ଆଉ ସେ ଖାଇବ କ'ଣ? ଖୁବ୍ ଲଜ୍ଜିତ ଅନୁଭବ କଲା। ଜଳଖିଆ କାଗଜ ପ୍ୟାକେଟକୁ ବେଞ୍ଚ ତଳକୁ ଗଳାଇ ଦେଇ ମାନସୀକୁ ସାଙ୍ଗରେ ଧରି ସଭାସ୍ଥଳରୁ ଅନ୍ୟତ୍ର ଚାଲିଗଲା।

ଶୁଭଦା ଏବଂ ମାନସୀ ସଭା ପଡିଆଠାରୁ କିଛି ଦୂରରେ ବସି ଗପସପ କରୁଥିଲେ। ମାନସୀ ଶୁଭଦାର ଘନିଷ୍ଠ ବାନ୍ଧବୀ। ସ୍କୁଲରୁ ସେମାନେ ଏଯାଏଁ ସାଥିହୋଇ ପଢ଼ି ଆସୁଛନ୍ତି। ଦୁହିଁଙ୍କର ମନୋଭାବ ତଥା ବିଷୟ ଚୟନ ଏକା ପ୍ରକାର। ଏଣୁ ସେମାନଙ୍କ ଭିତରେ ଘନିଷ୍ଠତା ଟିକେ ଅଧିକା। ଶୁଭଦା କେବେ କଳ୍ପନା ମଧ୍ୟ କରି ନଥିଲା ଯେ ତା' ମାନସ ପଟରେ କିଏ ଜଣେ କେବେ ନିଜର ସ୍ଥାନ କରିନେବ। ବରୁନ୍‌ର ଶୁଭଦା ପ୍ରତି ଥିବା ଆଗ୍ରହ ଶୁଭଦା ଜାଣିସାରିଥିଲା । ଯେଉଁ ବୟସରେ ପ୍ରେମର ଛୁଆଁ ମଣିଷ ଦେହରେ ଶିହରଣ ଖେଳାଏ ଫୁଲମାନେ ଆବଶ୍ୟକତାଠାରୁ ଅଧିକ କୋମଳ ଲାଗନ୍ତି। ବର୍ଷାରେ

ଭିଜିଲେ ଦେହରେ ଭିନ୍ନ ଏକ ରୋମାଞ୍ଚ ଖେଳେ ହୁଏତ ସେ ବୟସରେ ଶୁଭଦା ପହଞ୍ଚି ସାରିଥିଲା ।

'ଆପଣ ଖୁବ୍ ସୁନ୍ଦର ଭାଷଣ ଦେଲେ ।' ହଠାତ୍ କାହାର କଣ୍ଠ ସ୍ୱର ଭାସିଆସିଲା । ମୁହଁ ପଛକୁ ବୁଲାଇ ଦେଖିଲା ବେଳକୁ ବରୁନ୍ ଠିଆ ହୋଇଛି । ଶୁଭଦା କିଛି ନ କହି ମୁଣ୍ଡ ତଳକୁ କରିନେଲା ବେକରେ ଝୁଲୁଥିବା ଓଢ଼ଣୀକୁ ଛାତି ଉପରକୁ ଟାଣି ଆଣିଲା । ଆପଣ କିଛି କହୁନାହାନ୍ତି ଯେ ।

'ସେଟିକେ କମ୍ କଥାକୁହେ ।' ମାନସୀ ଉତ୍ତର ଦେଲା ।

'କାଇଁ ଷ୍ଟେଜ୍‌ରେ ତ ଜଣା ପଡୁନଥିଲେ ।'

'ଆପଣ ଭାଷଣ ଶୁଣୁଥିଲେ ନା' ତାକୁ ଦେଖୁଥିଲେ ।' ମାନସୀର ଏପରି ରୋକ୍ ଠୋକ୍ ଜବାବ୍‌ରେ ଶୁଭଦା ଟିକେ ଇତସ୍ତତଃ ହୋଇ ହାତଠାରି ତାକୁ ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଲା । ବରୁନ୍ କିନ୍ତୁ ଖୁବ୍ ସ୍ୱାଭାବିକ ଲାଗୁଥିଲା ମାନସୀର ଜବାବ୍‌ରେ । ବରୁନ୍ ଆଉ ମାନସୀ ମଧ୍ୟରେ ଗୁଡାଏ ଅନାବଶ୍ୟକ କଥୋପକଥନ ଚାଲିଥାଏ । ବରୁନ୍‌ର କିନ୍ତୁ ଉଦ୍ଦେଶ୍ୟଥାଏ ଭିନ୍ନ । କେମିତି ଶୁଭଦା କଣ୍ଠରୁ ପଦେ କଥା ଶୁଣିବ ନଚେତ୍ ଶୁଭଦାକୁ ପଦେ କଥା କହିବ । ତେଣୁ ମାନସୀ ସହିତ କଥାହେବା ଛଳରେ ଆଖିର କୋଣରେ ସେ ଦେଖିବାକୁ ଚେଷ୍ଟା କରୁଥାଏ ଶୁଭଦାକୁ । ଶୁଭଦା ଠିକ୍ ସେହିପରି ନିରବ ହୋଇ ଠିଆ ହୋଇଥିଲା । କିଛି କ୍ଷଣ ଆଗରୁ ମଞ୍ଚ ଉପରେ ସମାଜରେ ଘଟୁଥିବା ଭିନ୍ନ ଭିନ୍ନ ସାମାଜିକ ନିର୍ଯାତନାକୁ ନେଇ ମତବ୍ୟକ୍ତ କରୁଥିବା ଶୁଭଦା ଯେ ମଞ୍ଚ ବାହାରେ ଏକ ଭିନ୍ନ ଚରିତ୍ର ତାହା ବରୁନ୍ ଜାଣିସାରିଥାଏ । ତଥାପି ଶୁଭଦାର ଏପରି ସଂସ୍କାରିତ ବ୍ୟବହାର ତାକୁ ଆହୁରି ଆକର୍ଷିତ କଲା । ଶେଷରେ ଶୁଭଦାକୁ ଆଉ ଥରେ ଭାଷଣ ପାଇଁ ଶୁଭେଚ୍ଛା ଜଣାଇଲା ବରୁନ୍ । ଏଥର ମୁହଁ ଖୋଲି ଧନ୍ୟବାଦ ଦେଲା ଶୁଭଦା ।

ସେଦିନ ରାତିରେ ଘରକୁ ଫେରି ସାମାନ୍ୟ ଅନ୍ୟମନସ୍କ ଥିଲା ଶୁଭଦା । ସେ ଯେଉଁ ପରିବାରରୁ ଆସିଥିଲା ତାହା ସହରର ଏକ ସଂସ୍କାରିତ ପରିବାର ବୋଲି ସମସ୍ତେ ଜାଣନ୍ତି ବିବାହ ପୂର୍ବରୁ ପ୍ରେମ ସେ ପରିବାରରେ ଅନୁମତି ନାହିଁ । ତଥାପି ହୃଦୟର କେଉଁ ଏକ କୋଣ ତା'ର ଦୁର୍ବଳ ହୋଇ ଉଠିଥିଲା

ବରୁନ୍ ପାଇଁ। ପ୍ରେମ ଏମିତି ବେଳେ ବେଳେ ହୃଦୟକୁ ଛୁଏଁ କାହାକୁ କିଛି ନକହି କାହାକୁ କିଛି ନଜଣାଇ ।

ଏହି କିଛି ସମୟର ସାକ୍ଷାତରେ ଶୁଭଦା ଜାଣିସାରିଥିଲା ବରୁନ୍ ଜଣେ ପ୍ରତିଷ୍ଠିତ ଲେଖକ ଏବଂ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ । ଏକ ରାଜ୍ୟସ୍ତରୀୟ ଉତ୍ସବରେ ବରୁନ୍ ସମ୍ମାନୀତ ହେବାକୁ ଥାଏ। ସେଠାରେ ଉପସ୍ଥିତ ଥିଲେ ଶୁଭଦା ଏବଂ ମାନସୀ। ସେହି ଉତ୍ସବକୁ ଶୁଭଦାକୁ ଆଣିବା ପାଇଁ ମାନସୀର ସାହାଯ୍ୟ ନେଇଥିଲା ବରୁନ୍। ନିଜର ଇଚ୍ଛା ନଥିଲେ ବି ମାନସୀର କଥା ରଖିବା ପାଇଁ ଶୁଭଦା ସେଠାକୁ ଆସିବାକୁ ରାଜି ହୋଇଗଲା। ଉତ୍ସବରେ ପହଞ୍ଚିବା ପାଇଁ ବରୁନ୍ ମାନସୀ ପାଖକୁ ଦୁଇଟି ନିମନ୍ତ୍ରଣ ପତ୍ର ପଠାଇଥିଲା, ଗୋଟିଏ ମାନସୀ ନାମରେ ଆରଟି ଶୁଭଦା ନାମରେ । ନିମନ୍ତ୍ରଣ ବିଷୟରେ କହିବାକୁ ମାନସୀ ଶୁଭଦା ଘରେ ଯାଇ ପହଞ୍ଚିଲା । ପାଖରେ କେହି ନଥିବାର ସୁଯୋଗ ନେଇ ମାନସୀ ବରୁନ୍‌ର ହାତ ଲେଖା ନିମନ୍ତ୍ରଣଟି ଶୁଭଦା ହାତକୁ ବଢ଼ାଇଦେଲା । ବରୁନ୍ ହାତ ଲେଖା ନିମନ୍ତ୍ରଣ ତାହା ପୁଣି ଶୁଭଦା ଉଦ୍ଦେଶ୍ୟରେ। ଦେହଟା ଭିତରେ କେମିତି ଗୋଟେ ଅଜଣା ଉନ୍ମାଦନ ଖେଳିଗଲା ଶୁଭଦାର । ଉତ୍ସବକୁ ଯିବା ପାଇଁ ସେ ମାନସୀକୁ ସହମତି ଜଣାଇଦେଲା । ଉତ୍ସବ ସ୍ଥଳରେ ଶୁଭଦା ବରୁନ୍‌ର ଅନ୍ୟମନସ୍କତାର ସୁଯୋଗ ନେଇ ତାକୁ ବାରମ୍ବାର ଦେଖୁଥିଲା । କେତେବେଳେ କେମିତି ଦୁଇଜଣଙ୍କର ଆଖି ମଧ୍ୟ ମିଶିଯାଉଥିଲା । ଲାଜେଇ ଲାଜେଇ କାନ ଉପରର କେଶ ସଜାଡୁ ସଜାଡୁ ମୁଣ୍ଡ ତଳକୁ କରିନେଉଥିଲା ଶୁଭଦା । ଶୁଭଦାର ଏପରି ଆଚରଣରେ ବରୁନ୍ ଅଧିକରୁ ଅଧିକ ଆକର୍ଷିତ ହେଉଥିଲା। ଉତ୍ସବ ସରିଲାବେଳକୁ ଖୁବ୍ ଡେରୀ ହୋଇସାରିଥାଏ । ଏତେ ବିଳମ୍ବରେ କେବେ ଘରକୁ ଫେରିନି ଶୁଭଦା । ଯା'ହେଉ ଆସିଲାବେଳେ ବାପାଙ୍କଠାରୁ ଅନୁମତି ନେଇ ସେ ଆସିଥିଲା ।

ଉତ୍ସବରେ ବିଳମ୍ବ ହେତୁ ବରୁନ୍, ମାନସୀ ଏବଂ ଶୁଭଦାକୁ ଘରକୁ ଛାଡ଼ିନେବାକୁ ଉଚିତ୍ ମନେ କରିଥିଲା ! ଅନ୍ଧାର ରାତି। ମନରେ ଅନେକ ଆଶଙ୍କା ନେଇ ଶୁଭଦା ଗାଡିରେ ବସିଥାଏ । ଫେରିବା ସମୟରେ ମାନସୀର ଘର ପ୍ରଥମେ ଆସିବାରୁ ସେ ଓହ୍ଲାଇ ଗଲା । ଡ୍ରାଇଭର ପାଖରେ ବସିଥିବା

ବରୁନ୍ ପଛ ସିଟ୍‌କୁ ଚାଲିଆସିଲା । ଶୁଭଦା ମନରେ ଭୟ ଆହୁରି ବଢ଼ିଚାଲିଲା । ବରୁନ୍‌ର ପ୍ରତିଟି କଥାକୁ ସେ କେବଳ ମୁଣ୍ଡ ଟୁଙ୍ଗାରିବା ଛଡା  କିଛି ଅଧିକ କହିବାର ସାହସ ଜୁଟାଇପାରୁନଥିଲା । ହଠାତ୍ ଶୁଭଦା ଅନୁଭବ କଲା ବରୁନ୍ ଯେପରି ଅନ୍ଧାରର ସୁଯୋଗ ନେଇ ତାକୁ ଛୁଇଁବାକୁ ଚେଷ୍ଟା କରୁଛି । ନା, ତା ଅନୁମାନ ଭୁଲ୍‌ଥିଲା । ଦିନ ସାରାର କ୍ଳାନ୍ତିକୁ ମେଣ୍ଟାଇବାକୁ ଯାଇ ବରୁନ୍ ଦୁଇହାତ ଖୋଲି ଟିକେ ଲମ୍ବା ନିଶ୍ୱାସ ଛାଡିବାକୁ ଚେଷ୍ଟା କରୁଥିଲା । ଆଶ୍ୱସ୍ତ ହେଲା ଶୁଭଦା, ବରୁନ୍ ପ୍ରତି ଥିବା ତାର ବିଶ୍ୱାସ ଆଉ ସମ୍ମାନ ଆହୁରି ଦୃଢ଼ ହୋଇଗଲା । ରାସ୍ତା କଡରେ ଏକ ଦୋକାନ ଦେଖି ବରୁନ୍ ଡ୍ରାଇଭରକୁ ଗାଡି ରଖିବା ପାଇଁ ନିର୍ଦ୍ଦେଶ ଦେଲା । ଗାଡିରୁ ଓହ୍ଲାଇ ଯାଇ ବରୁନ୍ ପାଖ ଦୋକାନରୁ କିଛି କିଣିଆଣିଲା । ଗାଡି ଭିତରେ ବସି ଗାଡି ଛାଡିବାକୁ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲା ବରୁନ୍ । ଶୁଭଦାର ମନ ଭିତରେ ଥିବା ଉତ୍ସୁକତାକୁ ଭଙ୍ଗ କରି ଦୋକାନରୁ ଆଣିଥିବା ଚକୋଲେଟ୍ ପ୍ୟାକେଟ୍‌କୁ ତା'ଆଡକୁ ବଢ଼ାଇଦେଲା ବରୁନ୍ । ଅପ୍ରସ୍ତୁତ ହୋଇଗଲା ଶୁଭଦା । ହଠାତ୍ ମନ ଭିତରେ ତା'ର କେତେ କ'ଣ ପ୍ରଶ୍ନ ଉଙ୍କି ମାରିଲା ।

"କ'ଣ ପାଇଁ ବରୁନ୍ ମୋତେ ଚକୋଲେଟ୍ ଦେଲେ ? ମାନସୀକୁ ବି ଚକୋଲେଟ୍ ଦେଇପାରିଥାନ୍ତେ ? ମାନସୀର ଅନୁପସ୍ଥିତିରେ ମୋତେ ଚକୋଲେଟ୍ ଦେବାର କାରଣ କ'ଣ ? ମୋ ପ୍ରତି ବରୁନ୍ ଆକର୍ଷିତ ହେଉନାହାନ୍ତି ତ ?" ଏହିପରି ପ୍ରଶ୍ନ ସବୁ ମଧ୍ୟରେ ବାନ୍ଧି ହୋଇ ରହିଥିବା ଶୁଭଦା ଉତ୍ସବ ପାଇଁ କିନ୍ତୁ ବରୁନ୍‌କୁ ଶୁଭେଚ୍ଛା ଜଣାଇବାକୁ ଭୁଲି ଯାଇଥିଲା । ଶୁଭଦାର ଘର ସାମ୍ନାରେ ପହଞ୍ଚି ଯାଇଥିଲେ ସେମାନେ । ଶୁଭଦା ଗାଡିରୁ ଓହ୍ଲାଇଲା ଏବଂ ପରେ ପରେ ବରୁନ୍ । ଭଦ୍ରାମୀ ଦୃଷ୍ଟିରୁ ଶୁଭଦା ବରୁନ୍‌କୁ ନିମନ୍ତ୍ରଣ କଲା ତା'ଘରକୁ । ସେ ଚାହୁଁଥିଲା ନିମନ୍ତ୍ରଣ ସତ୍ତ୍ୱେ ବରୁନ୍ ତା' ଘରକୁ ନ'ଆସନ୍ତୁ । ଏତେ ରାତିରେ କୌଣସି ଅଜଣା ପୁରୁଷ ସାଙ୍ଗରେ ଫେରିବା ତା' ବାପା କିପରି ଗ୍ରହଣ କରିବେ ତାହା ଶୁଭଦାକୁ ଜଣା ନଥିଲା । କିନ୍ତୁ ବରୁନ୍ ଶୁଭଦାର ନିମନ୍ତ୍ରଣ ରକ୍ଷା କରି ତା' ପଛେ ପଛେ ଘର ଭିତରକୁ ଆସିଲା । ଶୁଭଦାର ବାପା ବସି ଟିଭି ଦେଖୁଥିଲେ । ଝିଅ ଫେରିବାର ଦେଖି

ସେ ଟିକେ ଆଶ୍ୱସ୍ତ ହେଲେ । ଶୁଭଦା ଭିତର ଘରକୁ ପଶିଗଲା । ଶୁଭଦାର ବାପା ବରୁନ୍‌କୁ ଦେଖି ନିଜ ବସିଥିବା ସ୍ଥାନରୁ ଉଠି ଶୁଭେଚ୍ଛା ଜଣାଇଲେ ଏବଂ ଝିଅ ଶୁଭଦାକୁ ଚା' କରିଆଣିବାକୁ ନିର୍ଦ୍ଦେଶ ଦେଲେ । ଶୁଭଦା ଚା' ଧରି ଆସିଲାବେଳକୁ ଜାଣିନେଲା ବରୁନ୍ ସହିତ ତା'ବାପାଙ୍କର ଆଗରୁ ପରିଚୟ ଅଛି । କିଛି ସମୟ କଥାବାର୍ତ୍ତା ପରେ ବରୁନ୍ ଶୁଭରାତ୍ରୀ ଜଣାଇ ସେଠାରୁ ବିଦାୟ ନେଲା । ଗାଡିର ଡୋରଖୋଲି ଗାଡି ଭିତରେ ପଶୁ ପଶୁ ବରୁନ୍ ଦେଖିଲା ଝରକା ଆଢୁଆଳରେ ଶୁଭଦା ତାକୁ ଦେଖୁଛି । ବରୁନ୍ ମନରେ ଜନ୍ମ ନେଇଥିବା ପ୍ରେମ ଧିରେ ଧିରେ ଜୀବନ ପାଇବାକୁ ଆରମ୍ଭ କଲା ।

ବରୁନ୍ ଆଉ ଶୁଭଦା ଦିନେ ନିଷ୍ପତ୍ତି ନେଲେ କେଉଁ ଏକ ରେଷ୍ଟୁରେଣ୍ଟରେ ସେମାନେ ଏକାଠି ଭେଟିବେ, ଆଉ ଭେଟିଲେ ମଧ୍ୟ । ସେହି ସାକ୍ଷାତକାରରୁ ଶୁଭଦା ଜାଣିବାକୁ ପାଇଲା ବରୁନ୍‌ର ପରିବାର ସଂପର୍କରେ ଯେ, ସେମାନେ ଦୁଇ ଭାଇ ଏବଂ ଦୁଇ ଭଉଣୀ । ବରୁନ୍‌ର ଭାଇଭଉଣୀଙ୍କ ବିବାହ ସରିଯାଇଛି ଏବଂ ବିବାହକୁ ନେଇ ସେତେଟା ଆକର୍ଷଣ ନଥିବାରୁ ବରୁନ୍ ଏପର୍ଯ୍ୟନ୍ତ ବିବାହ କଥା ଚିନ୍ତା କରିନାହିଁ ବୋଲି କଥା ଛଳରେ ଶୁଭଦାକୁ କହେ । ଶୁଭଦା ମଧ୍ୟ ତା'ର ପରିବାରର କଥା କହିବାକୁ ଯାଇ ସେମାନେ ତିନି ଭଉଣୀ ଏବଂ ଦୁଇ ଭାଇ ଥିବା ବରୁନ୍‌କୁ ଜଣାଇଲା । ପରିବାରର ସମସ୍ତଙ୍କଠାରୁ ସାନ ହୋଇଥିବାରୁ ସେ ସମସ୍ତଙ୍କଠାରୁ ପ୍ରଚୁର ଭଲ ପାଇବା ପାଏ ତଥାପି ନିଜର ସ୍ୱତନ୍ତ୍ରତା ଏବଂ ପରିଶ୍ରମ ପଣିଆ ପାଇଁ ତା' ପରିବାରରେ ତାକୁ ସମସ୍ତେ ସମ୍ମାନ କରନ୍ତି । ସେ ସବୁଠାରୁ ଛୋଟ ହୋଇ ମଧ୍ୟ ସମସ୍ତଙ୍କର ଦାୟିତ୍ୱ ଖୁବ୍ ସୁନ୍ଦର ଭାବରେ ନେଇଥାଏ । କାହା ଆଖିରେ ଲୁହ ଦେଖିଲେ ସେ ବ୍ୟସ୍ତ ବିବ୍ରତ ହୋଇଯାଏ, ସେ ନିଜକୁ ଥୟ ଧରି ରଖିପାରେନା । ଶୁଭଦା ଧିରେ ଧିରେ ଅନୁଭବ କରିବାକୁ ଆରମ୍ଭ କଲା ବରୁନ୍‌କୁ ଭଲ ପାଇବାକୁ ଆରମ୍ଭ କରିଛି ଏବଂ ତା'ମନରେ ବିଶ୍ୱାସ ଆସି ସାରିଥିଲା ବରୁନ୍ ମଧ୍ୟ ତାକୁ ଭଲ ପାଉଛି । ଦୁଇ ଜଣଙ୍କର ପରସ୍ପର ପ୍ରତି ଥିବା ଆକର୍ଷଣରେ ପ୍ରେମର ଅଙ୍କୁରୋଦ୍‌ଗମ ହୋଇସାରିଥିଲା ।

ଶୁଭଦାର ବାପା ଥିଲେ ଜଣେ ସରକାରୀ କର୍ମଚାରୀ । ସ୍ୱାଭିମାନ୍ ଆଉ ସଂସ୍କାରକୁ ସେ ସାଥି କରି ବଞ୍ଚି ଆସିଛନ୍ତି ସାରା ଜୀବନ । ତାଙ୍କ ନିୟମ

କାନୁନ୍ ବିରୁଦ୍ଧରେ ପରିବାରର ସଦସ୍ୟ କୌଣସି କାମ କରିବା ପାଇଁ ସାହାସ କରନ୍ତିନାହିଁ । ଯଦି ବା କେବେ କିଛି ସେପରି ଘଟିଗଲା ସେ ସହଜରେ ହଜମ କରିପାରନ୍ତିନାହିଁ ସେହିସବୁକୁ। ତାଙ୍କର ଏପରି ସ୍ୱଭାବକୁ ତାଙ୍କ ସହଧର୍ମୀଣୀ ଯେପରି ଜାଣିଥିଲେ ତାହାଠାରୁ ଅଧିକ ଅଭ୍ୟସ୍ତ ହୋଇସାରିଥିଲେ ତାଙ୍କର ସନ୍ତାନସନ୍ତତିମାନେ। ଟିକେ ଟିକେ କଥାରେ ଚିଡିଯିବା ବା ଗାଳି କରିବା ଶୁଭଦା ବାପାଙ୍କର ଯେପରି ଗୋଟିଏ ସ୍ୱଭାବ। ସେଥିପାଇଁ କୌଣସି ଚାକର ବାକର ବେଶୀଦିନ ତାଙ୍କ ଘରେ କାମ କରିବା ପାଇଁ ମଙ୍ଗନ୍ତି ନାହିଁ । ତାଙ୍କ ନିୟମକାନୁନ୍‌ରେ ଯିଏ ବାନ୍ଧି ନହେଲା ସେ ତାକୁ ସହଜରେ କ୍ଷମା ମଧ୍ୟ କରନ୍ତି ନାହିଁ । ବାପାଙ୍କର ଏପରି ସ୍ୱଭାବ ବରୁନ୍‌କୁ ନେଇ ଶୁଭଦା ମନରେ ବାରମ୍ବାର ଆଶଙ୍କା ସୃଷ୍ଟି କରେ । କିନ୍ତୁ ବେଳେ ବେଳେ ସେ ଭାବେ ବରୁନ୍ ତ ଏପର୍ଯ୍ୟନ୍ତ ମୁହଁ ଖୋଲି ତାଙ୍କ ମନର କଥା ତାକୁ ଜଣାଇନାହିଁ ସେ କାହିଁକି ଏପରି ଅଧୈର୍ଯ୍ୟ ହେଉଛି । ବେଳେବେଳେ ତା' ମନରେ ଭୟ ଉପୁଜେ ପ୍ରେମରେ ପଡିଲେ ଲୋକେ କୁହନ୍ତି ମଣିଷ ବାଟବଣା ହୁଏ । ସେ କେତେ ସ୍ୱପ୍ନ ଦେଖିଛି ଜୀବନକୁ ନେଇ ଆଉ ଜୀବିକାକୁ ନେଇ । ଜୀବନକୁ ସେ ସାଧାରଣ କରି ନୁହେଁ ଅସାଧାରଣ କରିବା ଚେଷ୍ଟାରେ ପିଲାଦିନରୁ ପ୍ରୟାସ ଜାରି ରଖିଛି । ପ୍ରେମ ଏଥିରେ ପ୍ରତିବନ୍ଧକ ସାଜିବ ନାହିଁ ତ ?

ଶୁଭଦା ଖାଲି ଭଲ ପାଠପଢ଼େ ନାହିଁ ପାଠ ଛଡା ସେ ଖୁବ୍ ସୁନ୍ଦର ଗୀତ ମଧ୍ୟ ଗାଇ ଜାଣେ । ବାପାଙ୍କର କଡା ଶାସନ ଆଗରେ ତା'ର ସଙ୍ଗୀତ ଶିକ୍ଷା ପିଲା ଦିନୁ ସିନା ବନ୍ଦ ହୋଇଯାଇଥିଲା କିନ୍ତୁ ଭଗବାନଙ୍କ ଆଶିର୍ବାଦରେ ସେ ପାଇଥିବା ସଙ୍ଗୀତର ପ୍ରତିଭା ତା'ର ବୟସ ବଢ଼ିବା ସାଙ୍ଗରେ ବିକଶିତ ହୋଇଚାଲିଥିଲା । ଝିଅର ପ୍ରତିଭା ଆଗରେ ବାପାଙ୍କର ନିୟମ ଦିନେ ହାର ମାନିଲା ଏବଂ ସୁଯୋଗ ସୁବିଧା ପାଇଲା କ୍ଷଣି ଶୁଭଦା ତା' ପ୍ରତିଭାକୁ ପ୍ରମାଣ କରିବା ପାଇଁ ପଛଘୁଞ୍ଚା ଦେଉନଥିଲା। ବରୁନ୍ ଖୁବ୍ ଅଳ୍ପ ଦିନରେ ଜାଣିଯାଇଥିଲା ଶୁଭଦାର ଏପରି ପ୍ରତିଭା ବିଷୟରେ। ସଙ୍ଗୀତକୁ ମାଧ୍ୟମ କରି ଯେ ସେ ଶୁଭଦାର ନିକଟବର୍ତ୍ତୀ ହୋଇପାରିବ ତା' ମଧ୍ୟ ସେ ଜାଣିସାରିଥିଲା। ସେଥିପାଇଁ ସଙ୍ଗୀତ ସହିତ ଯୋଡି ହୋଇ ରହିବା ପାଇଁ ବରୁନ୍ ସବୁବେଳେ ଶୁଭଦାକୁ ପ୍ରେରଣା ଦେଉଥିଲା ।

ପ୍ରଥମ କରି ସେଦିନ ଶୁଭଦା ଷ୍ଟେଜ ଉପରକୁ ଚଢ଼ିଲା, ଗୀତ ଗାଇବା ଉଦ୍ଦେଶ୍ୟରେ। ଖୁବ୍ ବଡ଼ ଷ୍ଟେଜ୍। ଅନେକ ରକମର ଲାଇଟ୍‌ର ବ୍ୟବସ୍ଥା। ଆକର୍ଷଣୀୟ ସାଜସଜ୍ଜା ସାଙ୍ଗକୁ ଭରପୂର ଶ୍ରୋତାଙ୍କୁ ଦେଖି ବିମୋହିତ ହୋଇଉଠିଥିଲା ଶୁଭଦା। ଶୁଭଦାର ସଙ୍ଗୀତ ପ୍ରତିଭାକୁ ବିକଶିତ କରିବା ଉଦ୍ଦେଶ୍ୟରେ ଏ ଥିଲା ବରୁନ୍‌ର ଏକ ପ୍ରୟାସ । ବରୁନ୍ ପ୍ରତି ଅସରନ୍ତି କୃତଜ୍ଞତା ଢ଼ାଳିଦେଇଥିଲା ଶୁଭଦା ସେହି ସନ୍ଧ୍ୟାରେ। ଶୁଭଦାର ଗୀତ ଶେଷରେ ଦର୍ଶକମାନଙ୍କର କରତାଳି ତା' ମଧ୍ୟରେ ଥିବା ସାହସକୁ ଆହୁରି ଜୀବନ୍ତ କରିବାରେ ସାହାଯ୍ୟ କରିଥିଲା । ନିଜର ସଙ୍ଗୀତ ଶେଷ କରି ଯେତେବେଳେ ଗ୍ରୀନ୍‌ରୁମ୍‌ର ଝାପ୍‌ସା ସବୁଜ ଆଲୁଅରେ ନିଜକୁ ସଜାଡୁଥିଲା ଶୁଭଦା ସେ ସମୟରେ ବରୁନ୍‌ର ଛୁଆଁ ତା' ମନରେ ପ୍ରେମର ପ୍ରଥମ ଫଗୁଣ ସ୍ପର୍ଶ କରୁଥିଲା।

ଶୁଭଦାର ହାତକୁ ଜାବୁଡ଼ି ଧରି ବରୁନ୍ କହିଲା, 'ରିଏଲି ୟୁ'ଆର୍ ଏ ଜିନିଅସ୍।' ତୁମର କଣ୍ଠ କୌଣସି ପ୍ରଚ୍ଛଦପଟ ଗାୟିକା ସହିତ ସମକକ୍ଷ। ତୁମେ ଯେ କାହିଁକି ଚଳଚ୍ଚିତ୍ରରେ ଗୀତ ଗାଉନାହଁ ତାହା ମୁଁ ବୁଝିପାରୁନି ? ନିଜର ଏତେ ସୁନ୍ଦର ପ୍ରତିଭାକୁ କାହିଁକି ନିଜ ମଧ୍ୟରେ ଆବଦ୍ଧ କରି ରଖିଛ। ଆବସୋଲ୍ୟୁଟ୍‌ଲି ୟୁ ଆର ଏ ପାୱାର ଫୁଲ ସିଙ୍ଗର।'

ଶୁଭଦା ଖୁସୀର ଦୋଳିରେ ଝୁଲିବାକୁ ଲାଗିଲା ଏବଂ ଧୀରେ ଧୀରେ ତା' ସଙ୍ଗୀତ ଜୀବନ ନୂଆ ରୂପ ନେଲା । ବରୁନ୍‌ର ପ୍ରେରଣାରେ ଶୁଭଦା ଭିତରେ ଅନେକ ପରିବର୍ତ୍ତନ ଘଟୁଥାଏ। ବାସ୍ ସେ ବର୍ତ୍ତମାନ ଖୁବ୍ ଖୁସି ଯେ ତା' ଭିତରେ ଗଚ୍ଛିତ ପ୍ରତିଭାକୁ ନେଇ ଦିନେ ଯେଉଁ ସ୍ୱପ୍ନ ଦେଖିଥିଲା ତା' ଆଜି ବରୁନ୍ ଯୋଗୁଁ ପୂରଣ ହେବାକୁ ଯାଉଛି।

ସୁଯୋଗ ମଣିଷ ଜୀବନରେ ବାରମ୍ବାର ଆସେନି । ଆଉ ତାହା ଯଦି ଭଗବାନ ପ୍ରଦତ୍ତ କୌଣସି ପ୍ରତିଭାକୁ ଲୋକଲୋଚନରେ ଆଣିବାର ପ୍ରଚେଷ୍ଟା ହୋଇଥାଏ ତେବେ ତାହା ତ ଖୁବ୍ ସୁଖକର । ଶୁଭଦା ମନେ ମନେ ଭଗବାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଥିଲା ବରୁନ୍ ଭଳି ବନ୍ଧୁଟିଏ ପାଇ । ନିଜ ଭିତରେ ଥିବା ସଙ୍ଗୀତ ପ୍ରତିଭା ଯେ ଦିନେ ଲୋକଲୋଚନକୁ ଆସିପାରିବ ଏବଂ ତାହା ସମସ୍ତଙ୍କ ଦ୍ୱାରା ଖାଲି ଗ୍ରହଣ ଯୋଗ୍ୟ ହେବନାହିଁ ତ ଉଚ୍ଚ

ପ୍ରଶଂସିତ ହେବ ଏହା ଶୁଭଦାକୁ ଜଣା ନଥିଲା । ବରଂ ବଣର ମଲ୍ଲୀ ବଣରେ ଫୁଟି ମରିଯିବା ଆଗରୁ ତା'ର ମହ ମହ ବାସ୍ନା ସହିତ ଶ୍ରୋତାମାନଙ୍କୁ ପରିଚିତ କରାଇପାରିଥିବାରୁ ବରୁନ୍ ପ୍ରତି କୃତକୃତ୍ୟ ହୋଇଯାଉଥିଲା ଶୁଭଦା। ଧିରେ ଧିରେ ଶୁଭଦା ଏବଂ ବରୁନ୍ ମଧ୍ୟରେ ସଂପର୍କର ଦୂରତା କମିବାକୁ ଲାଗିଲା । ଶୁଭଦାର ସଙ୍କୋଚ ଯେତିକି କମିବାରେ ଲାଗୁଥିଲା ବରୁନ୍‌ର ସାହାସ ସେହି ଅନୁପାତରେ ବଢ଼ିଚାଲିଥିଲା।

ତା'ର ଏହି ସୁପ୍ତ ପ୍ରତିଭାର ଜାଗ୍ରତ ପ୍ରହରି ରୂପେ ପହରା ଦେଇଛି ବରୁନ୍। ଶୁଭଦା ମଧ୍ୟରେ ଏହିସବୁ ଅଗ୍ରଗତି ଦେଖି ଶୁଭଦାର ପରିବାର ମଧ୍ୟ ଖୁବ୍ ଖୁସି ହେଉଥାଆନ୍ତି। ବାପା ଅଧିକ ଉତ୍ସାହିତ କରନ୍ତି। ବାପାଙ୍କ ଉତ୍ସାହରେ ଏକ ନୂତନ ପ୍ରେରଣା ଉପଲବ୍ଧି କରେ ଶୁଭଦା। ଯେଉଁ ମଣିଷ ଦିନେ ଏସବୁକୁ ବାରଣ କରୁଥିଲେ ସେ ଆଜି ତା'ର ଏହି ପ୍ରତିଭାରେ ଖୁସି ଏବଂ ପରୋକ୍ଷ ଭାବେ ତାଙ୍କ ପ୍ରେରଣାରେ ଶୁଭଦା ଖୁବ୍ ଆନନ୍ଦିତ ହୁଏ।

ଶୁଭଦା ଏବଂ ବରୁନ୍ ମଧ୍ୟରେ ବନ୍ଧୁତା ଦିନକୁ ଦିନ ବଢ଼ିବାରେ ଲାଗିଲା । ନିବିଡତା ଏବଂ ଆନ୍ତରିକତା ଗୋଟିଏ ଲକ୍ଷ୍ମଣରେଖା ମଧ୍ୟରେ ସୀମିତ ରହି ମଧ୍ୟ ଦୁହିଁଙ୍କୁ ନିକଟ କରିବାରେ ସମର୍ଥ ହୋଇଥିଲା । ଏକ ଶୁଭ ମୁହୂର୍ତ୍ତରେ ବରୁନ୍ ଶୁଭଦାକୁ ତା'ର ମନ ଭିତରର କଥା ପ୍ରକାଶ କରିବାରେ ସଫଳ ହେଲା।

'ଶୁଭଦା ମୁଁ ତୁମକୁ ଭଲ ପାଏ ।'

ବରୁନ୍‌ର ଏପରି ମନ୍ତବ୍ୟରେ ନୀରବ ହୋଇଯାଇଥିଲା ଶୁଭଦା । ବରୁନ୍‌ର ସାହାଯ୍ୟ ସହଯୋଗରେ ତା'ର ପ୍ରତିଭା ଆଜି ଲୋକଲୋଚନକୁ ଆସିବାରେ ସଫଳ ହୋଇଛି । ବରୁନ୍‌କୁ ଶୁଭଦା ଯେ କେବଳ ପସନ୍ଦ କରୁଥିଲା ତା'ନୁହେଁ ତା'ପ୍ରତି ତା'ର ନିଃସର୍ତ୍ତ ସମ୍ମାନ ମଧ୍ୟ ଥିଲା । ପସନ୍ଦ ଆଉ ସମ୍ମାନରେ ମଣିଷ ଯେତେବେଳେ ପ୍ରେମ କରିବସେ ସେତେବେଳେ ପ୍ରେମ ପାଉଥିବା ଝିଅଟି ନିଜକୁ ଖୁବ୍ ଭାଗ୍ୟବତୀ ମନେକରେ । ଶୁଭଦା ନିଜକୁ ଖୁବ୍ ଭାଗ୍ୟବତୀ ମନେ କରୁଥିଲା ସତ କିନ୍ତୁ ବରୁନ୍ କଥାରେ ସମ୍ମତି ଦେବାରେ ସେ ସାହାସ ଯୁଟାଇପାରୁନଥିଲା । ନିଜର ପରିବାରର ମର୍ଯ୍ୟାଦା ତଥା ସାମାଜିକ ସ୍ୱୀକୃତି କଥା ଚିନ୍ତା କରି ସେ ଅନିଚ୍ଛା ସତ୍ତ୍ୱେ ବରୁନ୍‌ର ପ୍ରସ୍ତାବକୁ ମନା କରିଦେଲା ।

ପ୍ରେମ ଆଉ ବିବାହ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ। ଦୁହେଁ ଦୁହିଁଙ୍କ ସହିତ ଏପରି ଭାବରେ ଜଡିତ ଯେ ଦୁହିଁଙ୍କ ଭିତରୁ କାହାକୁ ଅଲଗା କରିଦେଲେ ଅସ୍ତିତ୍ୱ ଶୂନ୍ୟ ହୋଇଯାଏ ଦାମ୍ପତ୍ୟ ସମ୍ପର୍କ। ଶୁଭଦା ଥିଲା ସଂସ୍କାରିତ ପରିବାରର ଝିଅ । ବାପା, ମାଆ ଆଉ ସମାଜର ସ୍ୱୀକୃତି ବିନା କୌଣସି ସଂପର୍କ ସ୍ଥାପନ କରିବାରେ ପାଦଟିଏ ଆଗେଇବା ତା'ର ବିବେକର ବିରୋଧାଭାସ ଥିଲା । ପିତାମାତା ତଥା ଗୁରୁଜନଙ୍କର ଆଶିର୍ବାଦ ବିନା ଯେକୌଣସି ଶୁଭକାର୍ଯ୍ୟ ସଫଳ ହୋଇପାରେନା ସେକଥା ସେ ଭଲ ଭାବରେ ଜାଣିଥିଲା। ତେଣୁ ନିଜ ପ୍ରେମକୁ ପାଇବାପାଇଁ ସେ କେବେ ପରିବାରର ଅସମ୍ମାନ କଥା ଚିନ୍ତା କରିପାରୁନଥିଲା। ବରୁନ୍‌ର ପ୍ରେମ ନିବେଦନକୁ ସେ ବାରମ୍ବାର ପ୍ରତ୍ୟାଖ୍ୟାନ କରି ଚାଲିଥିଲା। ବରୁନ୍ କିନ୍ତୁ ଶୁଭଦାକୁ ଭୁଲିବା ଅବସ୍ଥାରେ ନଥିଲା। ତା' ପ୍ରେମକୁ ପାଇବା ପାଇଁ ସେ ଅନବରତ ଚେଷ୍ଟାରେ ଲାଗି ରହିଥିଲା । ଶୁଭଦାର ଅବୁଝା ମନକୁ ଜିଣିବାର ପ୍ରୟାସ ସତରେ ଯେପରି ତା'ପାଇଁ ଗୋଟିଏ ଚ୍ୟାଲେଞ୍ଜ ଥିଲା । ଏମିତି ତ ମନଜିଣା ପ୍ରେମରେ ଗୋଟିଏ ଉଲ୍ଲାସ ଥାଏ ଠିକ୍ ବର୍ଷାର ଟୋପାମାନଙ୍କ ଭିତରେ ଥିବା ଆବେଗ ଭଳି। ମାଟିକୁ ଛୁଇଁବାର ହେଉ କି ମାଟିରୁ ସେ ନିଆରା ବାସ୍ନାକୁ କାଢ଼ିବାକୁ ହେଉ ବର୍ଷାର ଟୋପାମାନେ ଅନ୍ତରଙ୍ଗତାର ଡୋରୀରେ ଛନ୍ଦି ଦିଅନ୍ତି ମାଟିର ଦେହକୁ। ବର୍ଷାର ପ୍ରଥମ ଛୁଆଁରେ ମାଟି ଲାଜେଇ ଯାଏ, ଆଉ ସଜେଇ ହୁଏ ଫଗୁଣ ସାଙ୍ଗେ ଏକାତ୍ମ ହେବାକୁ। ବର୍ଷା ଆଉ ଫଗୁଣର ସ୍ପର୍ଶ ବିନା ମାଟିରେ ଜୀବନ୍ୟାସ ଅସମ୍ଭବ। ଠିକ୍ ସେହିପରି ବରୁନ୍ ମଧ୍ୟ ଅନୁଭବ କରିସାରିଥିଲା ହୁଏତ ଶୁଭଦା ପାଇଁ ତା'ହୃଦୟ କେତେବେଳେ କେମିତି ନିର୍ଲ୍ଲଜ ଭାବରେ ଷାଠିଏ ଥର ପରିବର୍ତ୍ତେ ଅଧିକ ଥର ଧକ୍ ଧକ୍ କରେ । କିଛି ଦିନ ପରେ ବରୁନ୍ ଶୁଭଦାର ପ୍ରତ୍ୟାଖ୍ୟାନର କାରଣ ଜାଣିପାରିଲା। ଶେଷରେ ଶୁଭଦାକୁ ଛାଡି ସେ ତା'ର ପରିବାରର ଅନ୍ୟ ସଦସ୍ୟମାନଙ୍କ ନିକଟବର୍ତ୍ତୀ ହେବା ପାଇଁ ନିଷ୍ପତ୍ତି ନେଲା। ହୁଏତ ପ୍ରେମକୁ ଜିତିବାର କଳା ତାକୁ ଜଣାଥିଲା। ଆଉ ସେ କଳା ମାଧ୍ୟମରେ ସେ ଶୁଭଦାର ବାପାମାଆଙ୍କର ବିଶ୍ୱାସ ଜିତି ପାରିଥିଲା ଖୁବ୍ ଅଳ୍ପ ଦିନ ମଧ୍ୟରେ । ଯେତେବେଳେ ବରୁନ୍‌ର ହୃଦ୍‌ବୋଧ ହେଲା ଯେ ଶୁଭଦାର ବାପା ମାଆଙ୍କର ବିଶ୍ୱାସ ସେ ଜିତି

ସାରିଛି ଶୁଭଦାକୁ ନେଇ ତା'ମନର ଦୁର୍ବଳତା କଥା ସେ ତା'ବାପାମାଆଙ୍କ ନିକଟରେ ପ୍ରକାଶ କରିଥିଲା । ବରୁନ୍ ଭଳି ଜଣେ ଯୁବସୁଲଭ ପୁରୁଷକୁ କିଏ ବା କାହିଁକି କ୍ୱାଇଁ କରିବାକୁ ମନା କରିବ ? ସେମାନେ ସମ୍ମତି ଦେଲେ ବରୁନ୍‌ର ପ୍ରସ୍ତାବକୁ। ଦରଜା ଫାଙ୍କରେ ଠିଆ ହୋଇ ଏସବୁ ଶୁଣୁଥିଲା ଶୁଭଦା । ନିଜ ପ୍ରେମକୁ ବାପା ମାଆଙ୍କ ସ୍ୱୀକୃତି ଦେବା କଥା ଜାଣି ସେ ଆଉ ସ୍ଥିର ହୋଇ ରହିପାରିଲାନାହିଁ । ଅସ୍ଥିର ଦେହମନକୁ ଶୀତଳେଇବାକୁ କିଛି କ୍ଷଣ ବେଡ୍‌ରେ ମୁହଁମାଡି ଶୋଇଯାଇ ଅନୁଭବ କଲା ପ୍ରେମରେ ଭିଜିବାର ଉନ୍ମାଦନାକୁ । ପ୍ରେମ ଯେ ଏତେ ସୁନ୍ଦର ଅନାବିଳ ଆଉ ରଙ୍ଗୀନ ହୋଇପାରେ ସେକଥା ସେ ଅନୁଭବ କରିପାରିଥିଲା ସେହି ମୁହୂର୍ତ୍ତରେ ।

ଶୁଭଦା ପରିବାରର ସ୍ୱୀକୃତି ପରେ ବରୁନ୍ ଏବଂ ଶୁଭଦା ଖୁବ୍ ଖୁସୀ। ଦୁହିଁଙ୍କ ଭିତରେ ନିବିଡତା ଏବଂ ଅନ୍ତରଙ୍ଗତା ବଢ଼ି ବଢ଼ି ଚାଲିଲା। ଦୁହେଁ ପ୍ରେମର ସ୍ୱପ୍ନରେ ମସ୍‌ଗୁଲ୍ ହେଲେ । ଶୁଭଦା ସ୍ୱପ୍ନରେ ଦେଖିଲା ପ୍ରେମ କେତେ ରଙ୍ଗୀନ ଆଉ ଜୀବନ୍ତ ହୋଇପାରେ । ଏମିତି ତ ପ୍ରେମରେ ଥିବାବେଳେ ମଣିଷ ତା' ସାଥୀକୁ ନେଇ ସ୍ୱପ୍ନ ଦେଖେ ଆଉ ଅନୁଭବ କରେ ଏସବୁ ସ୍ୱପ୍ନ ଯେମିତି ବାସ୍ତବ ଆଉ ତା' ହାତ ପାହାନ୍ତାରେ। ବେଦୀରେ ବସି ବ୍ରାହ୍ମଣର ମନ୍ତ୍ରପାଠ, ଗୁରୁଜନମାନଙ୍କ ଆଶୀର୍ବାଦ ଭିତରେ ବିବାହର ସ୍ୱପ୍ନ ପ୍ରେମିକାମାନଙ୍କ ପାଇଁ ଖୁବ୍ ସାଧାରଣ। ଏଥିରୁ ଶୁଭଦା ବାଦ୍ ଯାଆନ୍ତା ବା କିପରି ? ଶୁଭଦା ବରୁନ୍‌କୁ ନେଇ ମଧ୍ୟ ସ୍ୱପ୍ନର ଦୁନିଆଁରେ ଘୂରିବୁଲେ। ପ୍ରେମ ନୀରବତା ଖୋଜିବୁଲେ ଆଉ ପ୍ରେମିକପ୍ରେମିକା ଚାହାନ୍ତି ସେମାନେ ଭିଡଠୁ, ଆତଜାତ ମଣିଷମାନଙ୍କଠୁ ଦୂରେଇ ରୁହନ୍ତୁ । ଶୁଭଦା ସ୍ୱପ୍ନ ଦେଖେ ବରୁନ୍ ସହିତ ସେ ଚାଲି ଯାଇଛି ଆଉ ଗୋଟିଏ ଦୁନିଆକୁ, ଭିନ୍ନ ଏକ ପୃଥିବୀକୁ । ଯେଉଁଠି ଜହ୍ନ ଓ ତାରାକୁ ନିଜ ସୁଖ ଓ ଐଶ୍ୱର୍ଯ୍ୟରେ ବେଖାତିର କରି ଶୁଭଦା ସମ୍ମୋହିତ ହୋଇଯାଉଛି। ଏହିପରି ଆକାଶ ଛୁଆଁ ସ୍ୱପ୍ନ ତା' ଜୀବନ ପବନକୁ ଦୋହଲାଇ ଦେଉଥାଏ। ଶୁଭଦା ଏପରି ସ୍ୱପ୍ନରେ ବୁଡି ରହିବାରେ ପାଉଥିଲା ଅସରନ୍ତି ଆନନ୍ଦ । କେବେ ତାକୁ ବରୁନ୍ ଗ୍ରହଣ କରିବ ଆଉ ବରୁନ୍‌ର ସମ୍ମୋହନରେ ସେ ସମ୍ମୋହିତ ହେବ ଏପରି ଭାବନା ଆଉ ଅପେକ୍ଷାରେ ସେ ଉନ୍ମାଦିତ ହେଉଥିଲା ଥରକୁ ଥର ।

ପ୍ରେମର ସ୍ୱପ୍ନ ସବୁ ବାସ୍ତବ ରୂପ ନେବା ପାଇଁ ବେଶୀ ସମୟ ନିଅନ୍ତି ନାହିଁ । ଶୁଭଦା ସହିତ ମଧ୍ୟ ସେୟା ଘଟୁଥିଲା। ବରୁନ୍ ବିବାହ ପ୍ରସ୍ତାବ ଦେଲା ଶୁଭଦାକୁ। ଶୁଭଦା ସତେ ଯେମିତି ଅପେକ୍ଷା କରିଥିଲା ଏହି ପବିତ୍ର ମୁହୂର୍ତ୍ତକୁ। ଯେଉଁଠାରେ ଆଗାମୀ ସ୍ୱପ୍ନର କୁହୁଡ଼ି ସବୁ ଚିକ୍‌ମିକ୍ ଜଳବିନ୍ଦୁ ପରି ଲାଖି ଯାଉଥିଲେ। ସକାଳ ହେବାକୁ ଅନେକ ଡ଼େରି। ଏ ସକାଳ ତା'ପାଇଁ ହେବ ଅଦ୍ୱିତୀୟ, ଅବିସ୍ମରଣୀୟ। ତା' ଗତିପଥର ମାନଚିତ୍ରରେ କାଲିର ସୂର୍ଯ୍ୟୋଦୟ ଟାଣିଦେବ ଅବିଭକ୍ତ ସୀମାରେଖାଟିଏ, ଯାହାକୁ ଡ଼େଇଁବା ପାଇଁ ବେଦୀରେ ବସି ତାକୁ ବ୍ରାହ୍ମଣର ପବିତ୍ର ମନ୍ତ୍ରରେ ସାହାନାଇର ମଙ୍ଗଳ ବାଦ୍ୟରେ ହଜିଯିବାକୁ ହେବ। କୁମାରୀରୁ ଶ୍ରୀମତୀ ହେବା ପାଇଁ ତା' ଖୋଲା ସୀମନ୍ତରେ ଜଣଙ୍କର ସିନ୍ଦୁରକୁ ସ୍ୱୀକାର କରିବାକୁ ହେବ। ହିନ୍ଦୁ ଘରର ଝିଅଟିଏ ପାଇଁ ଏ ସିନ୍ଦୁର ଅପରିହାର୍ଯ୍ୟ। ସ୍ୱାମୀ ସୋହାଗର ଜ୍ୱଳନ୍ତ ପ୍ରତୀକ। ବାକି ଜୀବନ ପାଇଁ ପ୍ରତୀକ୍ଷାର କବଚ ହୋଇ ଏହି ସିନ୍ଦୁର ତା'ର ନାରୀତ୍ୱକୁ ପୂର୍ଣ୍ଣତାରେ ଭରିଦେବ। ସ୍ୱପ୍ନ ଗୁଡ଼ିକ ତା'ର ମନକୁ ଉ଼ହଳ ବିକଳ କରୁଥାନ୍ତି। ବରୁନ୍‌ର ସମସ୍ତ କାର୍ଯ୍ୟକଳାପ, ଆଚାର-ବ୍ୟବହାର, ଭେଷ-ପୋଷାକ ଆଦିକୁ ନିଜର କରିନେଇ ନିଜର ସମସ୍ତ ସତ୍ତାକୁ ଯେପରି ବରୁନ୍ ପାଖରେ ସମର୍ପି ଦେଇଛି।

ଶୁଭଦାର ଚାଲିଚଳଣିରେ କିଛିଟା ପରିବର୍ତ୍ତନ ଅନୁଭବ କରି ଦିନେ ବାପା ତା'ର ଆଚାର ବ୍ୟବହାରରେ କଟକଣା ଜାରି କଲେ। ବଢ଼ିଲା ଝିଅ ଆଉ ତାତିଲା ଘିଅ ଦୁଇଟାକୁ ନିୟନ୍ତ୍ରଣରେ ନରଖିଲେ ବାଟବଣା ହେବାର ସୁଯୋଗ ଥାଏ । ଏପରି କଟକଣାରେ ବିବ୍ରତ ହେଲା ଶୁଭଦା । ବାପାଙ୍କ ତାଗିଦ୍‌ରେ ତାକୁ ଏବେ ଘରକୋଣରେ ବସିବାକୁ ପଡ଼ିବ। ଝିଅ ଜନମ ପରଘରକୁ। ଝିଅର ସ୍ୱଭାବ ଆଉ ଚରିତ୍ର ଯଦି ଦାଣ୍ଡହାଟ ହୋଇଯାଏ ଝିଅକୁ ହାତରୁ ଦୁଇହାତ କରିବା ଖୁବ୍ କଷ୍ଟକର। ଏସବୁ ଭାବିଲା ବେଳକୁ ଶୁଭଦା ନିଜ ପିଲାଦିନକୁ ଝୁରେ; କେଡ଼େ ସୁନ୍ଦର ଥିଲା ସତରେ ସେ ପିଲାଦିନ। ବୋହୂଚୋରୀ ଖେଳ, ନଟୁଖେଳ, ବାଟି ଖେଳ, ଗୁଲିଦଣ୍ଡା ଖେଳ ଆଦି ଖେଳରେ ସେ ପୁଅ ଝିଅର ଫରକ ନମାନି ସେ ସମସ୍ତଙ୍କ ସାଙ୍ଗରେ ଖେଳିଛି । ହେଲେ ବୟସ ବଢ଼ିବା ସଙ୍ଗେସଙ୍ଗେ ତା'ଉପରେ କଟକଣା କରିଦିଆଗଲା

ସେ ଆଉ ତା'ବୟସର ପୁଅଙ୍କ ସାଙ୍ଗରେ ସେପରି ମିଶିପାରିବ ନାହିଁ । ଶୁଭଦାର ସରଳ ମନକୁ ଏସବୁ ଯେପରି ଗରଳ ଛୁଇଁଲା ପରି ଥିଲା । ବୟସ ବଢ଼ିଲେ ଏତେ ବାଛବିଚାର କ'ଣ ପାଇଁ ? ପୁଅ ଝିଅଙ୍କ ଭିତରର ଫରକ୍ ଯଦି ଜନ୍ମ ସମୟରୁ ଜଣାପଡିଯାଉଛି ତେବେ ଏତେ ବର୍ଷ ପରେ ସେ ଫରକ୍‌କୁ ପୁଣି ଥରେ ମନେ ପକେଇ ସରଳମନକୁ କଦର୍ଥ କରିବାରେ କ'ଣ ବା ଲାଭ ଥାଏ । ତେବେ ଏସବୁ ପ୍ରଶ୍ନର ଉତ୍ତର ଶୁଭଦା ପାଖେ ନଥିଲେ ମଧ୍ଯ ସମାଜ ଗଢ଼ା ନିୟମରେ ସେ ଚାଲିବାକୁ ବାଧ୍ଯ ହେଉଥିଲା । ପଡିଶା ଘର ମାଉସୀ ବରକୋଳି ଆଚାର ଶୁଖାଇଥିଲାବେଳେ ଚୋରେଇ ଚୋରେଇ ସେସବୁକୁ ଖାଉ ତ ନଥିଲା ଓଲଟି ପାଟି କଲେ ତାଙ୍କୁ ଖତେଇ ହେଉଥିଲା । ଦନେଇ ମଉସା ଘରର ପିଜୁଳି ବାଡିରେ ପିଜୁଳି ଚୋରି କରି ଖାଇବାର ଏକ ନିଆରା ମଜା ନେଉଥାଏ । ଦନେଇ ମଉସା ଯାଚି କରି ପିଜୁଳି ଦେଲେ ଶୁଭଦା ଆଣେନି । ଦନେଇ ମଉସାକୁ ହଇରାଣ କରିବାକୁ ଯାଇ ସେ ଚୋରୀକରି ପିଜୁଳି ଖାଏ ଆଉ ସେଥିରୁ ଗୋଟେ ଅଦ୍‌ଭୁତ ଆନନ୍ଦ ସାଉଁଟେ । ସେ ବୟସରେ ନାଲି ଆଖି ଦେଖିବାକୁ ମିଳୁଥିଲା ସତ କିନ୍ତୁ ସେ ଆକଟରେ କଉଠିନା କଉଠି ମିଠାପଣ ଟିକେ ଲୁଚି ରହିଥାଏ । ଆଜି ଯୌବନ ଛୁଇଁଲାନି ଯେ ପିଲା ଦିନର ହସ ଖୁସୀ ସାଙ୍ଗକୁ ସ୍ବାଧୀନତା ସବୁ ଦୂରେଇ ଗଲା ତା'ପାଖରୁ । ସତରେ କ'ଣ ଏ ବୟସଟା ଏତେ ଦଗାଦିଆ ? ଭଗବାନ ଗଢ଼ା ବୟସକୁ ଏ ମଣିଷ ଗଢ଼ା ନିତି ନିୟମଗୁଡାକ ଯେ ଆକଟ କରିପାରନ୍ତି ସତରେ ଏ ଗୋଟିଏ ବିଚିତ୍ର ପ୍ରଥା। ତଥାପି ଏତେ ଆକଟ ମଧ୍ଯରେ ଶୁଭଦା ସେତେଟା ଏକାପଣ ଭିତରେ ନଥିଲା। ବରୁନ୍‌ର ସାନ୍ନିଧ୍ଯ, ପ୍ରେମ, ଗ୍ରହଣ ଓ ସମର୍ପଣରେ ସେ ଅନୁଭବ କରୁଥିଲା ସ୍ବୟଂ ସଂପୂର୍ଣ୍ଣ। ରଙ୍ଗହୀନ ଜୀବନକୁ ପ୍ରେମ ଯେ ଗୋଲାପି କରିଦିଏ ଶୁଭଦା ତାହା ଜାଣିସାରିଥିଲା। ପ୍ରେମର ଗୋଲାପି କରିବାର ସାମର୍ଥ୍ୟତା ହେତୁ ହୁଏତ ଗୋଲାପକୁ ପ୍ରେମର ଚିହ୍ନ ବୋଲି ଧରାଯାଏ ତାହା ସେ ଥରେ ବରୁନ୍ ଦେଇଥିବା ଏକ ଲଭ୍ କାର୍ଡରୁ ଜାଣିପାରିଥିଲା ।

କିନ୍ତୁ ଆଜି ଏସବୁ ଯେମିତି ସ୍ମୃତିର ମାନସ ପଟରେ ସ୍ବପ୍ନ ହୋଇଯାଇଛି। ଏସବୁ କଟକଣାର ମଧ୍ଯ ଏକ ମହତ ଉଦ୍ଦେଶ୍ୟ ଅଛି ଏକଥା ସେ ଠିକ୍ ଉପଲବ୍ଧି କରିପାରୁଥିଲା। କାଲି ତା' ହାତରେ ମେହେନ୍ଦି ଲାଗିବ, ଶଙ୍ଖା

ପିନ୍ଧିବ, ସିନ୍ଥିରେ ସିନ୍ଦୂର ନାଇବ, ବାପ ଘରକୁ ପର କରି ଶାଶୁ ଘରକୁ ଚାଲିଯିବ ଅଜଣା କେତେ ଲୋକଙ୍କୁ ନିଜର କରିବ। ସେଠି ତାର ଆରମ୍ଭ ହେବ ଜୀବନର ଆଉ ଗୋଟିଏ ନୂଆ ଫର୍ଦ୍ଦ। ଶାଶୁ, ଶ୍ୱଶୁର, ଦିଅର, ନଣନ୍ଦ ସମସ୍ତଙ୍କ ଦାୟିତ୍ୱ ସୁଚାରୁ ରୂପେ ନେବା ଛଡା ସେମାନଙ୍କୁ ନିଜର କରି ଚଳିବାକୁ ପଡିବ ତାକୁ। ଏଣୁ ବର୍ତ୍ତମାନ ବାପାମାଆ କରୁଥିବା କଟକଣା ବିଷୟରେ ବେଶୀ ନଭାବି ନିଜ ମନକୁ ବୁଝାଇନେଲା ଶୁଭଦା । ସାଙ୍ଗସାଥୀଙ୍କ ସହ ଖେଳୁଥିବା ସମୟରେ ସେ ମାଆଙ୍କୁ ଘର କରଣାରେ ସାହାର୍ଯ୍ୟ କରି ଘରର ଦାୟିତ୍ୱବୋଧ ବିଷୟରେ ପରିଚିତ ହେବାକୁ ଉଚିତ୍ ମନେକଲା। ମାଆ ମଧ୍ୟ ଶୁଭଦାର ମନକଥା ସହଜରେ ବୁଝିନେଲେ । କେମିତିବା ବୁଝନ୍ତେନି ସେ ପରା ଦିନେ ସେଇ ବୟସରେ ବାପଘର ଛାଡି ଶୁଭଦା ବାପାର ହାତ ଧରିଥିଲେ। ସ୍ୱାମୀଙ୍କର ଦାୟିତ୍ୱ ନେବାଠାରୁ ଆରମ୍ଭ କରି ଶାଶୁଶ୍ୱଶୁରଙ୍କର ଯତ୍ନରେ ସେ କେବେ କମ୍ କରିନାହାନ୍ତି । ଆଉ ଝିଅକୁ ସେସବୁ ସାମାଜିକ ଚାଲିଚଳଣି ବିଷୟରେ ନ ଶିଖାନ୍ତେ ବା କିପରି ? ସେ ମନେ ମନେ ଖୁସୀ ହେଉଥିଲେ ଝିଅ ତାଙ୍କର ଯା' ହେଉ ଆପଣାଛାଏଁ ଦାୟିତ୍ୱ ନେବାକୁ ରାଜି ହେଇଯାଇଛି। ନହେଲେ ଆଜିକାଲିକା ଯାହା ସମୟ ହେଲାଣି ଝିଅଙ୍କୁ ସଜାଡିକି ରଖିବାକୁ ଯାଇ ବାପା ମାଆ ନାକେଦମ୍ ହୋଇଯାଉଛନ୍ତି । ଶୁଭଦା ଘରକାମ କଲାବେଳେ ବହୁ ସମୟରେ ବରୁନ୍ ତା'ମନ ଭିତରକୁ ପଶିଆସେ। ବରୁନ୍‌ର ଆଗମନରେ ଶୁଭଦା ଅନ୍ୟମନସ୍କ ହୁଏ । ଶୁଭଦା ମନେ ମନେ ହସିଦିଏ, ପାଖରେ କେହି ନଥିଲେ ବି ଗୁଣୁ ଗୁଣୁ ହୋଇ କାହା ସହିତ କଥା ହୁଏ । ଆଉ କେତେବେଳେ ଚା' କରୁ କରୁ ଚିନି ଯାଗାରେ ଲୁଣ ପକାଇ ଦିଏ ତ ଆଉ କେତେବେଳେ ତରକାରୀରେ ହଳଦୀ ଯାଗାରେ ଲଙ୍କାଗୁଣ୍ଡ। ଶୁଭଦାର ଏପରି ଅନ୍ୟମନସ୍କତାକୁ ନେଇ ମାଆ ତାକୁ କେତେଥର ପ୍ରଶ୍ନ କରିଛନ୍ତି; ଶୁଭଦା ଲାଜେଇଯାଏ ସିନା କିନ୍ତୁ କିଛି ଉତ୍ତର ଦିଏନା। ଓଲଟି ମନକୁ ମନ ପ୍ରଶ୍ନ କରେ ମାଆ କ'ଣ ସତରେ କିଛି ଜାଣିପାରୁଛନ୍ତି । ଝିଅର ଏପରି ହାବଭାବରେ ମାଆ କିଛି ଜାଣିପାରୁଥିଲେ ଏବଂ ମନେ ମନେ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ ଝିଅ ତାଙ୍କର ସୁଖର ସଂସାର କରୁ।

ବରୁନ୍ ବିଷୟରେ ଶୁଭଦାର ବାପା କୋଉଠୁ କ'ଣ ଶୁଣିଲେ କେଜାଣି ଶୁଭଦାକୁ ହଠାତ୍ ବାରଣ କଲେ ବରୁନ୍ ସହିତ ମିଶିବା ପାଇଁ। ଶୁଭଦା ପାଇଁ ଏପରି ବାରଣ ସବୁଠାରୁ କଷ୍ଟକର ଥିଲା । ସେ ବରୁନ୍‌କୁ ମାନସିକ ସ୍ତରରେ ଗ୍ରହଣ କରିସାରିଥିଲା ନିଜର ସ୍ୱାମୀ ଭାବରେ । ଖାଲି ଯାହା ଲୋକଜାଣିବା ବିବାହକୁ ଅପେକ୍ଷା କରିଥିଲା ସେ । ଶେଷରେ ସେ ଅନିଚ୍ଛା ସତ୍ତ୍ୱେ ନିଷ୍ପତ୍ତି ନେଲା ବାପାଙ୍କ ନିତିନିୟମ ଆଗରେ ସେ ତା' ପ୍ରେମକୁ ବଳି ଦେବ ଏବଂ ସେପରି କଲା ମଧ୍ୟ। ପ୍ରେମରେ ଥାଇ ପ୍ରେମିକାକୁ ଆଡେଇଦେବା ଠିକ୍ ଦେହ ଭିତରୁ କଲିଜାକୁ ଅଲଗା କଲା ଭଳି। ନିଜ ଶରୀରର ଏକ ଅଂଶକୁ ଅନ୍ୟତ୍ର କରିଦେବା ଖୁବ୍ କଷ୍ଟଦାୟକ ଏହା ସେଦିନ ଠିକ୍ ଅନୁଭବ କରି ପାରିଥିଲା ଶୁଭଦା। ସୃଷ୍ଟି ପ୍ରକୋଷ୍ଠରେ ସ୍ରଷ୍ଟା ମନୁଷ୍ୟର ଗଢ଼ିଥିବା ସମସ୍ତ ଅଙ୍ଗ ଆବଶ୍ୟକ। ଗୋଟିଏ ଅଙ୍ଗର ଅନୁପସ୍ଥିତିରେ ଶରୀରଟି ଯେପରି ଅସୁନ୍ଦର ଲାଗେ ଠିକ୍ ସେହିପରି ଅସୁନ୍ଦର ହୋଇଯାଇଥିଲା ଶୁଭଦାର ଜୀବନ।

ଆଜି ଅତୀତର ସେହି ଅଭୁଲା ଅଥଚ ଯନ୍ତ୍ରଣାସିକ୍ତ ମୁହୂର୍ତ୍ତଗୁଡିକ ମନେ ପଡିଲେ ଶୁଭଦା ନିଜ ଭିତରେ ନିୟନ୍ତ୍ରଣ ହରାଏ। ତଥାପି ସତ୍ୟତାକୁ ଛାତିରେ ଚାପି କଳ୍ପନାକୁ ହୃଦୟରେ ସ୍ଥାନ ଦେଇ ସେ ଆଜି ତା' ନିଜର ବାସ୍ତବ ଦୁନିଆ ତିଆରି କରିଛି । ହେଇପାରେ ତା'ଜୀବନର ଆଗପଛ ଦେଖିଲେ କେହିନା କେହି ତାକୁ ଅଭିଶପ୍ତାର ଆଖ୍ୟା ଦେଇପାରନ୍ତି ହେଲେ ଅଭିଶପ୍ତାର ପ୍ରତିଟି ମୁହୂର୍ତ୍ତକୁ ସେ ଆଜି ବି ଉପଭୋଗ କରୁଛି ଜଣେ ବେଫିକର, ବେଶାଲିସ୍ ପ୍ରେମିକା ଭାବେ।



ସେଦିନ ଶୁଭଦା ସହରର ନାମକରା ମଲ୍‌ରେ ଖୋଜି ବୁଲୁଥାଏ ବରୁନ୍ ଉଦ୍ଦେଶ୍ୟରେ ଉପହାରଟିଏ । ମଲ୍ ଭିତରେ ବୁଲୁ ବୁଲୁ ସେ ଯାଇ ପହଞ୍ଚିଲା ଗୋଟିଏ ଫଟୋ ଷ୍ଟୁଡିଓରେ ଯିଏ କି ଫଟୋମାନଙ୍କୁ ଫ୍ରେମିଂ କରି ସେଥିରେ ଶୁଭେଚ୍ଛାବାର୍ତ୍ତା ଲେଖି  ଉପହାରମାନ ପ୍ରସ୍ତୁତ କରୁଥିଲା । ଶୁଭଦାକୁ ଏହି ଉପହାରଟି ପସନ୍ଦ ହେଲା ସେ ସଙ୍ଗେ ସଙ୍ଗେ ନିଜ ବ୍ୟାଗ୍‌ରୁ  ନିଜର ଏବଂ ବରୁନ୍‌ର ଫଟୋ କାଢ଼ି ଦୋକାନୀ ଆଡକୁ ବଢ଼ାଇ ଦେଇ ସେ ସେଠାରେ ଅପେକ୍ଷା କଲା । ତା'ର ଅର୍ଡର ମୁତାବକ ଉପହାରଟି ଅଧ ଘଣ୍ଟା ମଧ୍ୟରେ ପ୍ରସ୍ତୁତ ହୋଇଗଲା । ଦୋକାନୀ ଶୁଭଦା ଆଡକୁ ବଢ଼ାଇଦେଲା ବରୁନ୍ ଏବଂ ତା'ର ଯୁଗଳ ଫଟୋ ଫ୍ରେମ୍‌କୁ । ଶୁଭଦା ଉପହାରକୁ ଦେଖି ମନେ ମନେ ଲାଜେଇ ଗଲା । ପାଖରେ ବସିଥିବା ଜଣେ ମହିଳା ସେହି ଉପହାରକୁ ଦେଖି ଖୁବ୍ ପ୍ରଶଂସା କରି କହିଲେ, 'ବାଃ ଚମତ୍କାର ଯୋଡି। ଏ କ'ଣ ଆପଣଙ୍କ ସ୍ୱାମୀ ?'

'ନା, ଏ ପର୍ଯ୍ୟନ୍ତ ବାହାଘର ହୋଇନାହିଁ, ନିକଟରେ ହେବ।'

ମହିଳା ଜଣକ ନିଜର ପରିଚୟ ଦେଇ ଶୁଭଦାଙ୍କୁ ନିଜ ଘରକୁ ନିମନ୍ତ୍ରଣ କଲେ । ଶୁଭଦା ହତବାକ୍ ହେଲା । ଏମିତି ଅଚିହ୍ନା ଅପରିଚିତରେ ସେ ତାଙ୍କ ଘରକୁ ଯିବ କାହିଁକି ବିନା କାରଣରେ। ଜଣେ ଅପରିଚିତ ମହିଳାଙ୍କ ଘରକୁ ଯିବକି ନାଇ ଚିନ୍ତା କରୁଥିବାବେଳେ ମହିଳାଜଣଙ୍କ ପୁଣି କହିଉଠିଲେ, 'ଶୁଭଦା ତୁମ ଶୁଭ ମନାସି ମୁଁ ମୋ ଘରକୁ ନିମନ୍ତ୍ରଣ ଜଣାଉଛି । ମୋତେ ସନ୍ଦେହ କଲେ ତୁମେ ତୁମ ଭବିଷ୍ୟତକୁ ସନ୍ଦେହ ଘେରରେ ଠେଲି ଦେବ । ମୋତେ ଆସି ଘରେ ଦେଖା କର ।' ଏହା କହି ଘରର ଠିକଣା ଲେଖାଥିବା ଏକ ଭିଜିଟିଙ୍ଗ୍ କାର୍ଡ ସେ ଶୁଭଦା ଆଡକୁ ବଢ଼ାଇଦେଲେ ।

ଭିଜିଟିଙ୍ଗ୍ କାର୍ଡ ଦେଖି ତାକୁ ମନେ ପଡିଛି ବରୁନ୍ ଦିନେ କହୁଥିଲେ ତାଙ୍କ ଘର ମଧ୍ୟ ଏହି ଏରିଆରେ। କାଲି ବରୁନ୍‌କୁ ଏହି ଉପହାର ତାଙ୍କ ଘରେ ନିଜେ ଯାଇ ଦେଇଆସିବି । ସେ ବି ସର୍ପରାଇଜ୍ ହେଇଯିବେ । ଦେଖିବା ଏହି ମହିଳାଙ୍କୁ ଏଟେଣ୍ଡ କରି ମୁଁ ବରୁନ୍ ଘର ଖୋଜି ପହଞ୍ଚିଯିବି ।

ପରଦିନ ପହଞ୍ଚିଗଲା ଶୁଭଦା ଠିକ୍ ସକାଳ ଏଗାରଟାରେ। ଗେଟ୍ ପାଖରେ ଦରଓ୍ୱାନ୍ ଫୋନ୍ କରି ଅନୁମତି ଦେଲାପରେ ଘର ମଧ୍ୟକୁ ପ୍ରବେଶ କଲା ଶୁଭଦା । ଶୁଭଦାଙ୍କୁ ଦେଖି ପାଛୋଟି ନେଲେ ସେ ମହିଳା ଘର ଭିତରକୁ । ଲିଭିଂ ରୁମ୍ ଖୁବ୍ ସୁନ୍ଦର ସାଜସଜ୍ଜା । ଶୁଭଦା ଦେଖିଲା ଘରସାରା ସେ ମହିଳାଙ୍କ ସହିତ ବରୁନ୍‌ର ଯୁଗଳ ଫଟୋସବୁ । ଏପରି ଫଟୋ ଦେଖି ଶୁଭଦା ତଟସ୍ଥ ହେଲା । ପ୍ରଶ୍ନ କଲା, 'ଆପଣଙ୍କ ସହିତ ଏହି ପୁରୁଷ ଜଣଙ୍କ କିଏ ?'

'ମୋ ସ୍ୱାମୀ... !'

ଶୁଭଦାର ପାଦତଳୁ ମାଟି ଖସିଗଲା, ମୁଣ୍ଡ ଉପରୁ ଆକାଶ ଛିଡିଗଲା ଯେପରି । ସେ ଏ କ'ଣ ଶୁଣୁଛି ? ତା' ସହିତ ଏତେ ବଡ ପ୍ରତାରଣା... ?

'ବରୁନ୍ ରାୟ ମୋ ସ୍ୱାମୀ । ଦୀର୍ଘ ଛଅ ବର୍ଷ ହେଲାଣି ଆମେ ବିବାହ ବନ୍ଧନରେ ଆବଦ୍ଧ । ତୁମେ ଯେପରି ପ୍ରେମରେ ତାଙ୍କୁ ନିଃସର୍ତ୍ତ ବିଶ୍ୱାସ କରୁଛ ମୁଁ ତା'ଠାରୁ ଶହେଗୁଣ ଅଧିକ ବିଶ୍ୱାସ କରି ମଧ୍ୟ ତାଙ୍କ ଦ୍ୱାରା ପ୍ରସ୍ତୁତ ଜାଲରେ ଛନ୍ଦି ହୋଇଗଲି। ସୁନ୍ଦରୀ ଝିଅ ଏବଂ ଖୋଲା ପଇସା ଦେଖିଲେ ସେ ନିଜର ନିୟନ୍ତ୍ରଣ ହରାନ୍ତି । ଯେଉଁ ଦୁଇଟା କି ସେ ମୋ ପାଖରୁ ଅତି ସହଜରେ ପାଇଥିଲେ ।

ଯେତେବେଳେ ତାଙ୍କର ଅସଲ ରୂପ ମୁଁ ଦେଖିଲି ଚାହିଁଥିଲି ତାଙ୍କଠାରୁ ଦୁରେଇଯିବି ବୋଲି ହେଲେ ଛାତିର ଯନ୍ତ୍ରଣା ମୋତେ ଆଉ ସେ ସୁଯୋଗ ଦେଲାନି। ଯାହା ବି ହେଲେ ସେ ମୋର ସ୍ୱାମୀ । ମୁଁ ତାଙ୍କ ପିଲାମାନଙ୍କର ମାଆ କେମିତି ସବୁ କିଛିକୁ ଶେଷ କରିଦେଇପାରିବି ? ଅନେକ କିଛି କଥା ଚିନ୍ତା କରି ଭାବିଲି ତାଙ୍କ ବିଚ୍ଛେଦର ଯନ୍ତ୍ରଣାରେ ମୁଁ ଆଉ ବଞ୍ଚିପାରିବି ନାହିଁ । ସବୁ ଯନ୍ତ୍ରଣାକୁ ପଛ କରି ମୁଁ ତାଙ୍କ ସହ ଆଜିଯାଏଁ ଚଳିଆସୁଛି । ଭାବିଥିଲି ତାଙ୍କୁ ଏତେ ପ୍ରଚୁର ଭଲ ପାଇବା ଦେବି ଯେ ସେ ଠିକ୍ ରାସ୍ତାକୁ ଫେରି ଆସିବେ । କିନ୍ତୁ ମୋ ଚେଷ୍ଟାରେ ଆଜିଯାଏଁ ସଫଳ ହୋଇନି । ନାରୀ ଦେହ ପ୍ରତି ଭୋକ ତାଙ୍କର ଦିନକୁ ଦିନ ବଢ଼ିବାରେ ଲାଗିଲା । ତାଙ୍କର ଆଗାମୀ ଶିକାର ବୋଧେ ତୁମେ ଶୁଭଦା ।  ଯଦି ପାରୁଛ ଛାତିର ଯନ୍ତ୍ରଣା ଛାତି ଭିତରେ ହାଲୁକା କରି ତାଙ୍କଠାରୁ ଦୂରେଇଯାଅ ନହେଲେ ବଞ୍ଚିବା ତୁମର ଦୂରୂହ ଏବଂ ଅସମ୍ଭବ ହୋଇଯିବ । ଆଉ ସେହି ଯନ୍ତ୍ରଣାର ବେଦନା ତୁମର ଭବିଷ୍ୟତକୁ ଛିନ୍‌ଭିନ୍ କରିବା ଛଡା, ତୁମ ପାଖରେ ଆଉ କିଛି ରାସ୍ତା ରଖିବନାହିଁ । ମୁଁ ନାରୀଟିଏ ହୋଇଥିବାରୁ ନାରୀ ମନର ବ୍ୟଥା ବୁଝୁଛି, ମୁଁ ତୁମକୁ ଅନୁରୋଧ କରୁଛି ବରୁନ୍‌ର କପଟତାର ଜାଲରେ ଛନ୍ଦି ହୋଇ ଜୀବନକୁ ଆଉ ନଷ୍ଟ କରନାହିଁ ।'

ଶୁଭଦା ମୁଣ୍ଡ ଉପରୁ ଆଶାର ଆକାଶ ଛିଣ୍ଡି ପଡିଲା। ଚାରିଆଡେ କେବଳ ଅନ୍ଧାର କିଟି କିଟି ଅନ୍ଧାର। ଶୁଭଦା ବୁଝିପାରୁନଥିଲା କି ଜାଣି ପାରୁନଥିଲା ଏସବୁ ଘଟଣାର ରହସ୍ୟ । ଜଣେ ପୁରୁଷ କ'ଣ ଏପରି ଆବେଗହୀନ ହୋଇପାରେ ? କେବଳ ଦେହ ଉପରେ ଆଶା ରଖି ଜଣେ କ'ଣ ଏତେ ବଡ ପ୍ରତାରଣା ଦେଇପାରେ ସେ ମହିଳା ତା' ସହିତ କିଛି ଅଭିନୟ କରିଦେଲେ ନାହିଁ ତ ? ତା' ପ୍ରେମ ଉପରେ ଅବିଶ୍ୱାସ କରିବାର ସାହାସ ଯୁଟାଇ ପାରୁନଥିଲା ଶୁଭଦା। ଯଦିଓ ସନ୍ଦେହର ଦାନା ସବୁ ତାକୁ ବିବ୍ରତ କରିବାକୁ ଆରମ୍ଭ କରିଦେଇଥିଲା । ସେ ଠିକ୍ କଲା ବରୁନ୍‌କୁ ଗୋଟିଏ ନିରୋଳା ସ୍ଥାନକୁ ଡାକି ସମସ୍ତ ସତ୍ୟାସତ୍ୟ ଜାଣିବାକୁ ଚେଷ୍ଟା କରିବ ।

ଗୋଟିଏ ସନ୍ଧ୍ୟାରେ ଏକାଠି ହେଲେ ଦୁହେଁ କଫି ସପ୍‌ରେ । ବରୁନ୍ ଶୁଭଦାକୁ ଦେଖୁ ଦେଖୁ ମନ୍ତବ୍ୟ ଦେଲା,  'ଆଜି ଖୁବ୍ ସୁନ୍ଦର ଲାଗୁଛ ଶୁଭଦା ।'

'ବରୁନ୍ ତୁମେ ବିବାହିତ ?' ପ୍ରଶ୍ନ କଲା ଶୁଭଦା । ଏପରି ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିଲା ସେ, ଚକିତ ହୋଇ ଚାହିଁଲା ଶୁଭଦା ଆଡକୁ ।

'ଉତ୍ତର ପାଇଲିନି ଯେ ବରୁନ୍ ?'

'ନା, ନା ସେପରି କିଛି ନୁହେଁ ମୁଁ ବିବାହ କରିଥିଲେ ତୁମକୁ କାହିଁକି ଭଲ ପାଇଥାନ୍ତି ?'

'ଆଉ ମିଥ୍ୟା ଆଶ୍ୱାସନା ଭିତରକୁ ଟାଣନି ମୋତେ ବରୁନ୍। ଏତେବଡ ପ୍ରତାରଣା ଦେଇସାରି ତୁମେ କିପରି ଏଭଳି ଅଭିନୟ କରିପାରୁଛ ?'

'ତୁମେ ଯଦି ବିବାହ କରିନା ତେବେ ପ୍ରଣତି ରାୟ ସହିତ ତୁମର ସଂପର୍କ କ'ଣ ?'

'ତୁମେ ଏସବୁ ଜାଣିଲ କେଉଁଠୁ ?'

'ମୋତେ ସତ ଜାଣିବାର ଅଛି ବରୁନ୍ ତାହା ପୁଣି ତୁମ ମୁହଁରୁ।'

'ହଁ ମୁଁ ବିବାହିତ..., କିନ୍ତୁ ପ୍ରଣତି ଉପରେ ମୁଁ ସନ୍ତୁଷ୍ଟ ନାହିଁ। ତାକୁ ଖୁବ୍ ଶୀଘ୍ର ଛାଡପତ୍ର ଦେଇ ମୁଁ ତୁମକୁ ସ୍ତ୍ରୀ ରୂପେ ଗ୍ରହଣ କରିବାକୁ ଚାହୁଁଛି ।'

'ଏ କଥା ତ ତୁମେ ମୋତେ ଆଗରୁ କହିପାରିଥାନ୍ତ ବରୁନ୍। ପ୍ରେମରେ କପଟତା ଏବଂ ମିଥ୍ୟାର ଆଶ୍ରୟ ନିଆଯାଏ ନାହିଁ । ମୁଁ ବା ତୁମଠାରୁ ଅଧିକା କ'ଣ ଚାହିଁଥିଲି ? ସଂପର୍କରେ ବିଶ୍ୱାସ ଥିଲେ ପ୍ରେମ ଆପଣା ଛାଏଁ ଘର କରି ବସେ । ସଂପର୍କ ଆରମ୍ଭ କରିବା ଆଗରୁ ତୁମେ ତ ଅବିଶ୍ୱାସର ମଞ୍ଜି ବୁଣିସାରିଲଣି। ପ୍ରେମକୁ ଚିହ୍ନାଇ ଦୁଇ ଦୁଇଟା ହୃଦୟକୁ ଯୋଡିଲ ପୁଣି ଯୋଡକୁ ବିଯୋଡ କରି ମୁହଁ ମୋଡି ଦେଲାବେଳେ କିପରି ତୁମର ବିବେକ ତୁମକୁ ବାଧା ଦେଲାନି ? ବିବେକ, ହୃଦୟ ଏବଂ ମନ ଏସବୁ ତୁମ ପାଖରେ ତୁଚ୍ଛ । କେବଳ ଦେହର ସୁଖରେ ତୁମେ ପ୍ରେମକୁ ଖୋଜୁଛ । ସେଥିପାଇଁ ପ୍ରତାରଣା ଦେଲାବେଳେ କ୍ଷତର ଯନ୍ତ୍ରଣା ତୁମକୁ ଜଣାପଡୁନାହିଁ । ମୁଁ କିନ୍ତୁ ତୁମକୁ ନିଃସର୍ତ୍ତ ପ୍ରେମ କରିଥିଲି ତୁମକୁ ନିଜର କରିସାରିଥିଲି- ତୁମର ହୋଇସାରିଥିଲି। ଆଉ କାହା ନାମରେ ଶଙ୍ଖା ସିନ୍ଦୂର ପିନ୍ଧି ସ୍ତ୍ରୀର ଅଭିନୟ କରିବା ମୋ ପକ୍ଷରେ ସମ୍ଭବ ନୁହେଁ। ଖାଲି ଏ ଜନ୍ମ ନୁହେଁ ଜନ୍ମ ଜନ୍ମ ପାଇଁ ତୁମକୁ ସ୍ୱାମୀ ରୂପେ ପାଇବା ପାଇଁ କେତେ ଦେବଦେବୀଙ୍କ ପାଖରେ ମଙ୍ଗଳ ମନାସି ମୁଁ ଦ୍ୱୀପ ଜାଳିଛି । ତୁମର ଅମଙ୍ଗଳ ମୁଁ ଚିନ୍ତା କରିପାରିବି ନାହିଁ । ମୁଁ ଆସୁଛି ବରୁନ୍ ...

ଏବେ ବି ସମୟ ଅଛି ନିଜକୁ ସଜାଡ଼ି ନିଅ।'

ଝିଅମାନଙ୍କର ବିଶ୍ୱାସ ଏବଂ ଭାବନା ସହିତ ଖେଳିବା ବରୁନ୍‌ର ଏକ ନିତିଦିନିଆ ଖେଳ। ଶୁଭଦା ବରୁନ୍ ସଂପର୍କରେ ଏସବୁ ଜାଣି ଖୁବ୍ ଭାଙ୍ଗିପଡ଼େ। ସାରା ଦୁନିଆ ତାକୁ ଏବେ ଅନ୍ଧକାରମୟ ଲାଗିଲା । ଏହି ଅନ୍ଧକାର ଭିତରେ ଆଲୁଅ ଛିଟାଟିଏ ଖୋଜିବାର ଶକ୍ତି ସେ ଜୁଟାଇ ପାରେନାହିଁ । କ'ଣ କରିବ କିଛି ସେ ଭାବିପାରୁ ନଥାଏ। ଯାହାକୁ ନିଜ ଜୀବନଠାରୁ ବଳି ଭଲ ପାଉଥିଲା, ଯାହାର ନାମ ସ୍ମରଣରେ ସମଗ୍ର ଶରୀର ଶିହରି ଉଠୁଥିଲା ସେ ହିଁ ଆଜି ତା'ର ଦୁଃଖର କାରଣ ପାଲଟିଛି। ଏକାବେଳକେ ଯେପରି ଶୁଭଦା ମୂକ ପାଲଟିଗଲା। ଏସବୁ ଶୁଣି ତାକୁ ବିଶ୍ୱାସ ହେଉ ନଥାଏ। ତା' ବିଶ୍ୱାସ ଏବଂ ଭାବନାକୁ ହତ୍ୟା କରିଥିବା ଏହି ଅତ୍ୟାଚାରୀ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଚାହିଁ ମଧ୍ୟ ସେ କରିପାରିନଥିଲା। କାରଣ ତା' ଅନ୍ତଃମନ ବର୍ତ୍ତମାନ ଯାଏଁ ବି ବରୁନ୍‌ର ସତ୍ୟତାକୁ ଗ୍ରହଣ କରିପାରି ନଥିଲା।

ତା'ର ସେହି ଆଦର୍ଶ! ସେ ଦିନ ସଭା ମଞ୍ଚରେ ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କ'ଣ ତାର ସେହି ବିପ୍ଳବୀ କଣ୍ଠର ଆର୍ତ୍ତନାଦ, ସେହି ପରିସର ମଧ୍ୟରେ ହିଁ ସୀମିତ ଥିଲା ? ଯିଏକି ଦିନେ ସ୍ୱର ଉଠାଇଥିଲା ନିଷ୍ପେସିତ ଏବଂ ନିର୍ଯାତିତ ନାରୀମାନଙ୍କ ପାଇଁ ସେ ଆଜି ସେହି ଯନ୍ତ୍ରଣାରେ ଛଟପଟ ହେଲାବେଳକୁ ମୁକ୍ତିର ରାସ୍ତା ଖୋଜି ପାଉନି । ଆଜି ବି କପଟ ପୁରୁଷ ପାଖରେ ସେହି କାମନା, ଲାଳସା ତଥା ବାସନା ଯେଉଁଥିର ଶିକାର ହେଉଛନ୍ତି ସରଳା, ନିରୀହା ଯୁବତୀମାନେ। କେବେ ସେ କଳ୍ପନା କରି ନଥିଲା ଯେ ଆଜନ୍ମ ଏ ସମାଜରେ ନାରୀ ଅତ୍ୟାଚାରୀମାନେ ଉପସ୍ଥିତ ଅଛନ୍ତି। ସେଦିନ ସଭା ମଞ୍ଚରେ ଦୀର୍ଘ ସମୟ ଧରି ସେ କରିଥିବା ଆହ୍ୱାନ ତଥା ଯୁକ୍ତିର କ'ଣ ଏହି ମୂଲ୍ୟ ? ଏପରି ପୁରୁଷଙ୍କ ଛଳନା ଜାଲରେ କେତେ ଦିନ ନାରୀ ଏପରି ଛନ୍ଦି ହୋଇ ତିଳ ତିଳ ହୋଇ ଜଳୁଥିବ ? ଏହି ପ୍ରଶ୍ନ ଯେପରି ନିଜକୁ ନିଜେ କରି ଶୁଭଦା ବ୍ୟସ୍ତ ହୋଇ ପଡୁଥିଲା। ସେ କେବେ ଭାବି ନଥିଲା ତା' ଜୀବନରେ ଦିନେ ପୁରୁଷର ଏପରି ମନୋଭାବକୁ ତାକୁ ସାମନା କରିବାକୁ ପଡ଼ିବ। ସଂପୂର୍ଣ୍ଣ ମୂକ ପାଲଟି ଯାଇ ଥିଲା ସେ। ତା' ଭିତରେ ଭିତରେ ଘଟଣାଟି ତାକୁ ବିଦାରି ଦେଉଥିଲା ବେଦନାର ଅସହ୍ୟ ଯନ୍ତ୍ରଣାରେ। ଭଲପାଇ

ତାକୁ ପ୍ରତାରିତ କରି ତା' ଆବେଗ ସହିତ ବରୁନ୍‌ର ଏଭଳି ଅଭିନୟରେ ଶୁଭଦା ଧିରେ ଧିରେ ରୋଗଗ୍ରସ୍ତ ହେବାକୁ ଲାଗିଲା । ଶୁଭଦାର ଏପରି ଶାରୀରିକ ଅବନତିରେ ତା'ଘରେ ଅନ୍ୟ ସଦସ୍ୟମାନେ ଚିନ୍ତାଗ୍ରସ୍ତ ଥିଲେ । ବରୁନ୍‌ର ସ୍ମୃତି ଶୁଭଦାକୁ ପ୍ରକୃତିସ୍ଥ କରିବାରେ ବିଳମ୍ବିତ କରୁଥିଲା ନିଶ୍ଚିତ କିନ୍ତୁ ମନୋବଳକୁ ଦୃଢ଼ କରି ସେ ସୁସ୍ଥ ହେବାକୁ ଚେଷ୍ଟା କଲା । ଜୀବନର ଏହି ଅଳ୍ପ ବୟସରେ ସେ ଅନୁଭବ କରିନେଲା ଦେହର ଆଘାତଠାରୁ ମନର ଆଘାତ ଯେ କେତେମାତ୍ରାରେ ଅଧିକ ଯନ୍ତ୍ରଣାଦାୟକ । ଶାରୀରିକ ଆଘାତରେ ମଣିଷ ଶୀଘ୍ର ହେଉ ଅବା ବିଳମ୍ବରେ ହେଉ ସୁସ୍ଥ ହେଇଯାଏ ସିନା କିନ୍ତୁ ମାନସିକ ଆଘାତ ଜନିତ ଅସୁସ୍ଥତା ମଣିଷକୁ ସାରା ଜୀବନ କଷ୍ଟ ଦେଉଥାଏ । ତାର ଏପରି ଶାରୀରିକ ଅବନତି ଦେଖି ଡାକ୍ତର ପରାମର୍ଶ ଦେଲେ ବରୁନ୍‌କୁ ତା' ସମ୍ମୁଖକୁ ଆଣିବା ପାଇଁ । ଶୁଭଦାର ବାରଣ ସତ୍ତ୍ୱେ ତାକୁ ସୁସ୍ଥ କରିବା ଉଦ୍ଦେଶ୍ୟରେ ବରୁନ୍‌କୁ ଡକାଗଲା । ବରୁନ୍‌କୁ ସମ୍ମୁଖରେ ପାଇ ଶୁଭଦା ଅନୁଭବ କରିସାରିଥିଲା ତା'ମଧ୍ୟରେ ଆଉ ସେହି ପୂର୍ବ ଆକର୍ଷଣ ନାହିଁ । କେବଳ ବରୁନ୍ ଶୁଭଦାର ଆକର୍ଷଣରେ ଆକର୍ଷିତ ହୋଇ ଚାଲିଆସିଥିଲା ସେଠାକୁ । କ'ଣ କହିବ, କେମିତି କହିବ ବରୁନ କିଛି ଭାବିପାରୁ ନଥାଏ । ଶୁଭଦାର ଏପରି ଅବସ୍ଥା ଦେଖି ସେ ଅତ୍ୟନ୍ତ ଦୁଃଖି ହୋଇପଡ଼ିଲା । ନୟନାଶ୍ରୁ ଏବଂ ଦୁଃଖିତ ସ୍ୱରରେ ପ୍ରଶ୍ନ କଲା- 'ତୁମେ ମୋତେ କିଛି କୁହ ଶୁଭଦା । ତୁମ ଅବସ୍ଥା ଦେଖି ମୋତେ ଖୁବ୍ ଖରାପ ଲାଗୁଛି ।'

ଏକ ଦୀର୍ଘଶ୍ୱାସ ନେଇ ଶୁଭଦା କହିଉଠେ, 'କ'ଣ ଆଉ ରଖିଛ ଯେ କହିବି ବରୁନ୍ ! ମୋତେ ଏବେ ନୀରବତା ହିଁ ଭଲ ଲାଗୁଛି । ଗୋଟାଏ ବିରାଟ ଦୁର୍ଘଟଣା ପରେ ଜୀବନ ମୋର ଯନ୍ତ୍ରଣା ପାଲଟି ଯାଇଛି । ସେସବୁ କଥା ମନେ ପକାଇ ମୁଁ ପୁଣି ମୋର ମାନସିକ ଭାରସାମ୍ୟ ହରାଇବାକୁ ଚାହୁଁନାହିଁ । ମୁଁ ଜାଣିନାହିଁ ମୁଁ କେତେ ଦିନ ନେବି ସେହି ଶୁଭଦାକୁ ଖୋଜି ପାଇବା ପାଇଁ । ତୁମର ପ୍ରତାରଣାର କୋପରେ ମୁଁ ତାକୁ ହରାଇ ସାରିଛି ।'

ଶୁଭଦାର ଏପରି ମନ୍ତବ୍ୟରେ ବରୁନ୍ ଖୁବ୍ ଅସହାୟ ମନେକଲା । ଶୁଭଦାର ଆଦର୍ଶ ଏବଂ ସତ୍‌ପଣିଆ ସମ୍ମୁଖରେ ନତମସ୍ତକ ହୋଇଥିଲା ସେ । ବିବାହିତ ହୋଇଥିବାରୁ ଶୁଭଦାକୁ ବିବାହ କରିବା ତା' ପକ୍ଷରେ ସମ୍ଭବ

ନଥିଲା। ସେ ମଧ୍ୟ ଜାଣିଥିଲା ଶୁଭଦା ଏପରି ପ୍ରସ୍ତାବରେ କେବେ ରାଜି ହେବ ନାହିଁ। ଶୁଭଦା ପ୍ରତି ଥିବା ତା'ର ଦୁର୍ବଳତା ଏବଂ ଆକର୍ଷଣର ପ୍ରଭାବ ଯଦିଓ ତା'ମନ ଭିତରେ ଠିକ୍ ସେହିଭଳି ବଳବତ୍ତର ଥିଲା କିନ୍ତୁ ଶୁଭଦା ବିଶ୍ୱାସରେ ବିଷ ଦେଇଥିବା କାରଣରୁ ସେ ନିଜକୁ ଦୋଷୀ ମନେ କରୁଥିଲା । ଶାରୀରିକସ୍ତରରେ ଶୁଭଦା ବରୁନ୍‌ଠାରୁ ଦୂରେଇ ଯାଇଥିଲା ସତ କିନ୍ତୁ ମାନସିକ ସ୍ତରରେ ବରୁନ୍ ସେଇମିତି ଜାଗା ନେଇ ବସିଥିଲା ଶୁଭଦା ମନରେ । ଏକ ବିଶ୍ୱସ୍ତ ପ୍ରେମିକା ଭଳି ଶୁଭଦା ବରୁନ୍‌କୁ ଗ୍ରହଣ କରିବା ପାଇଁ ଉଚିତ୍ ମନେ କରିନଥିଲା ସତ କିନ୍ତୁ ଯଥୋଚିତ୍ତ ଚେଷ୍ଟା କରିଥିଲା ବରୁନ୍‌ର ସ୍ୱଭାବକୁ ପରିବର୍ତ୍ତନ କରିବା ପାଇଁ । ସତରେ, ଜଣେ ନାରୀ ଜଣେ ପୁରୁଷର ଆସ୍ପର୍ଦ୍ଧାରେ ସମ୍ପୂର୍ଣ୍ଣ ନିଜକୁ ନିବୃତ କରିଦେଇ ପରମୁହୂର୍ତ୍ତରେ ପାଏ କେବଳ ଚେନାଏ ଶୂନ୍ୟତା। ଯେଉଁଠାରେ ସ୍ମୃତି ସବୁ କିଳକାରୀ ମାରୁଥାନ୍ତି କିନ୍ତୁ ତାକୁ ସ୍ପର୍ଶ କରିବାକୁ ନାରାଜ ହୋଇପଡ଼େ କ୍ଷତାକ୍ତ ପକ୍ଷୀଟି ଠିକ୍ ଶୁଭଦା ଭଳି। ଛାତିରେ ଅଜସ୍ର ବେଦନାର କୋହକୁ ଜାବୁଡ଼ି ଧରି ଗଢୁଥିବା ସୁନ୍ଦର ସଂସାର କିନ୍ତୁ ରଙ୍ଗୀନ ବଦଳରେ ଫିକା ଫିକା ଲାଗେ।

ଗ୍ରାଜୁଏସନ୍ ପରେ ଅଧିକ ଅଧ୍ୟୟନ ଚାହୁଁଥିଲେ ହେଁ ଶୁଭଦାର ଆଉ କେଉଁଥିରେ ମନ ଲାଗୁନଥିଲା। ତା'ର ସେହି ହସ ଖୁସିର ଜୀବନରେ ବରୁନ୍ ପ୍ରବେଶ କରି ତାକୁ ଆଜି ଏପରି ହନ୍ତସନ୍ତ କାହିଁକି କଲା– ଏହା ତାକୁ ବାରମ୍ବାର ବିବ୍ରତ କରୁଥିଲା। ଏଭଳି ଏକ ଦାରୁଣ ଆଘାତ ତାକୁ ଅସହାୟ କରିଦେଇ ନଥିଲା ତ ଓଲଟି ତାରି ପ୍ରଭାବରେ ସେ ଯେପରି ତା' ନିଜର ସତ୍ତା ହରାଇ ସାରିଥିଲା । ଭାବୁଥିଲା ଏ ଦୁନିଆଁରେ କେହି ନିଜର ନୁହଁନ୍ତି। କାହାକୁ ବିଶ୍ୱାସ କରିବା ଠିକ୍ ନୁହେଁ। କେତେ ସହଜରେ ସେ ଠକିଗଲା। ଏହି ଘଟଣାପରେ ଘରେ କେହି ତାକୁ କିଛି କହିବାକୁ ସାହସ କରିପାରୁ ନଥିଲେ। ଶୁଭଦାର ସେହି ହସ ହସ ମୁହଁରେ ଆଜି କେବଳ ଦୁଃଖର ମେଘ ଛାଇ ଯାଇଛି, ତା' ମୁଖମଣ୍ଡଳରୁ ଉଜ୍ଜ୍ୱଳତା ଉଭେଇଯାଇଛି। ଯାହାର ହାବଭାବରେ ଦିନେ ସମଗ୍ର ଘର ସ୍ୱତଃସ୍ଫୁର୍ତ୍ତ ଭାବରେ ଆନନ୍ଦର ଲହରି ସୃଷ୍ଟି କରୁଥିଲା, ତାରି ନିରବତାରେ ସେହି ଘରଟି ଆଜି ଖାଁ ଖାଁ ଲାଗୁଛି । ଅଜସ୍ର ବେଦନା ଏବଂ କୋହ ତା'ର

ଅନ୍ତସ୍ଥ ସତ୍ତାକୁ ଦୋହଲାଇ ଦେଉଛି। ମାୟାର ମରିଚିକା ହଠାତ୍ ଯେମିତି ଉଭେଇ ଯାଇ ସବୁଦିନ ପାଇଁ ତୃଷା ଛାଡ଼ିଯାଇଛି।

ସହିଷ୍ଣୁତା ନାରୀର ଭୂଷଣ। ମାତ୍ର ଅନ୍ୟାୟକୁ ମୁଣ୍ଡପାତି ସହିଯିବା ନାରୀର ଧର୍ମ ନୁହେଁ -ଏହା ସେଦିନ ଶୁଭଦା ବେଶ୍ ଅନୁଭବ କରିପାରିଥିଲା ସତ କିନ୍ତୁ ସେ ଅନ୍ୟାୟ ବିରୁଦ୍ଧରେ ମୁହଁ ଖୋଲି ହିଁ ନଥିଲା। ଯାହାକୁ ସେ ଏତେ ଜୀବନ ଦେଇ ଭଲ ପାଇଛି ତା' ବିରୁଦ୍ଧରେ ତା' ଜୀଭ ଲେଉଟିଲା ନାହିଁ। ଅଥର୍ବ ମଣିଷଟିଏ ପରି ସମ୍ପୂର୍ଣ୍ଣ ମୂକ ପାଲଟିଗଲା। ଜୀବନର ପ୍ରଥମ ପାହାଚରୁ ତାକୁ ଧିରେ ଧିରେ କ୍ଷୟୁଥିବା ଦେଖାଯାଉ ଥିଲେ ହେଁ ସେ ଏପରି ନିରାଶ ହୋଇ ନଥିଲା କେବେ। ହତାଶା ତାକୁ ସ୍ପର୍ଶ କରିପାରି ନଥିଲା। ଜୀବନ ହିଁ ସଂଘର୍ଷ ଏହା ମାନିନେଇ ଆଗେଇ ଚାଲିଥାଏ। ଜୀବନରେ ଏମିତି କେତେ ଘାତ ପ୍ରତିଘାତ ଆସିଛି, ସବୁକୁ ଗୋଟେ ଚ୍ୟାଲେଞ୍ଜ ରୂପେ ମାନି ନିଏ। କିନ୍ତୁ ସେଦିନ ସେ ସମ୍ପୂର୍ଣ୍ଣ ଭାଙ୍ଗି ପଡିଥିଲା। ହଁ, ଯାହାକୁ ନେଇ ସେ ସ୍ୱପ୍ନ ଦେଖୁଥିଲା ଯାହାକୁ ନେଇ ସୁଖୀ ସଂସାରର ସୁଖ ସାଉଁଟୁଥିଲା ସେ ସବୁ ଯେ ଥିଲା ମିଥ୍ୟା ଏହି ସତ୍ୟକୁ ସେ ଗ୍ରହଣ କରି ହିଁ ପାରୁନଥିଲା। ବରୁନ୍‌ର ପ୍ରତାରଣା ଶୁଭଦାକୁ ଆଜି ଦେଇଛି କଳ୍ପନାର ପରିବାର, ଯେଉଁ ପରିବାରର କାଳ୍ପନିକ ଅସ୍ତିତ୍ୱକୁ ନେଇ ଶୁଭଦା ଠିଆ କରିଛି ନିଜର ଏକ ବାସ୍ତବିକ ସ୍ଥିତି। କଳ୍ପନାର ସେ ଅନୁଭୂତି ସବୁ ବେଳେ ବେଳେ ଯନ୍ତ୍ରଣା ଦେଲେ ମଧ୍ୟ ଅଧିକ ସମୟ ଜୀବନକୁ ଜୀବନ ପରି ବଞ୍ଚିବାକୁ ସାହାସ ଯୋଗାଏ ଆଉ ଶୁଭଦା ଠିକ୍ ସେଇମିତି ବଞ୍ଚେ ମଧ୍ୟ। ଦିନେ ଯାହାକୁ ସେ ନିଜ ଜୀବନର ଏକ ଅଂଶ ବିଶେଷ ବୋଲି ଭାବୁଥିଲା କେତେବେଳେ ଯେ ତା' ହାତ ମୁଠାରୁ ଖସିଗଲା ତାହା ସେ ଜାଣିପାରିଲାନାହିଁ; ଠିକ୍ ଛୋଟ ପିଲାର ଆଞ୍ଜୁଳି ଫାଙ୍କଦେଇ ସରୁବାଲି ଖସିଯିବା ପରି ବା ଶୀତ ସକାଳର ହୁଗୁଳା ଡେମ୍ଫରୁ ଗଙ୍ଗଶିଉଳି ଖସିଯିବା ପରି। ତଥାପି ସେ ହାର ମାନୁନଥିଲା ତାର ଏପରି ସାମୟିକ ପରାଜୟ ପାଇଁ ଓଲଟି ଏଥିରୁ ଯେଉଁ ଅନୁଭୂତି ଅର୍ଜିଲା ତାହା ହୁଏତ ତା' ପାଇଁ ଯଥେଷ୍ଟ ଥିଲା ବାକି ଜୀବନ ବଞ୍ଚିବାକୁ ନେଇ ।

ବରୁନ୍ ଯେ କି ଜୀବନକୁ ଏକ ଖେଳ ଘର ମନେକରେ। ତା' ପାଇଁ ଜୀବନ ଏକ ରଙ୍ଗମଞ୍ଚ ଯେଉଁଥିରେ ନୂଆ ନୂଆ ରଙ୍ଗ ମାଖିବା ତାର ସୌକ।

ଭିନ୍ନ ଭିନ୍ନ ଚରିତ୍ରର ମୁଖା ପିନ୍ଧି ସେ ଝିଅମାନଙ୍କର ବିଶ୍ୱାସକୁ ଯେତେ ସହଜରେ ଜିତେ ତା'ଠାରୁ ଅତି ସହଜ ମନେ କରେ ସେମାନଙ୍କ ସହିତ ବିଶ୍ୱାସଘାତକତା କରିବାରେ । ଯେମିତି ଅଭିନେତାଟିଏ ଅଭିନୀତ ଚରିତ୍ରରେ ଅଭିନୟ କରିସାରି ନିଜସ୍ୱ ଚିରିତ୍ର ଭିତରକୁ ଚାଲିଆସେ ଠିକ୍ ସେମିତି ଝିଅଙ୍କ ସହିତ ମନଲୋଭା ଅଭିନୟ କରି ସେ ତା' ଚରିତ୍ର ମଧ୍ୟରେ ଖୁବ୍ ସହଜରେ ପଶିଯାଇପାରେ। ଆଉ ଏଥିରେ କାହାକୁ କଷ୍ଟ ହେଉଥିବ, କାହା ଭାବନାର ହତ୍ୟା ହେଉଥିବ ତାହା ଅନୁଭବ କରିବା ଯେପରି ତା'ର ଉପବନରେ ଲେଖାନାହିଁ। ତା' ହୃଦ କନ୍ଦରରୁ ଆସ୍ଫାଳିତ ଏହି ରିକ୍ତ ଭାବନା ତା' ପାଇଁ ଖୁବ ଉଚ୍ଛିଷ୍ଟ। ଯେଉଁ ରଙ୍ଗ ଚଷମା ପିନ୍ଧିଲେ ଦୁନିଆ ସେହିପରି ଦେଖାଯାଏ। ଠିକ୍ ଏମିତି ବରୁନ୍ ମଧ୍ୟ ଭାବେ ସେ ଯେମିତି ରଙ୍ଗ ମାଖିବା ପସନ୍ଦ କରେ ଅନ୍ୟମାନେ ମଧ୍ୟ ତାହା ଚାହୁଁଥିବେ। କିନ୍ତୁ ଏ ଥିଲା ତା'ର ସମ୍ପୂର୍ଣ୍ଣ ଭୁଲ ଧାରଣା ତାହା ସେ ଜାଣିପାରିଥିଲା। ଯେତେବେଳେ ସେ ଶୁଭଦା ବିଶ୍ୱାସରେ ବିଷ ଦେଲା।



ଯା’ ଭିତରେ ଶୁଭଦାର ବଡ଼ ଦୁଇଭଉଣୀ ବିବାହ କରିସାରି ସଂସାର ଗଢ଼ିବାକୁ ଶାଶୁଘରକୁ ଚାଲିଗଲେ । ଘରେ ଅନେକ ବେଳରେ ଏକୁଟିଆ ବସି ଶୁଭଦା ନିଃସଙ୍ଗତାର ସହିତ ବନ୍ଧୁତା କରିସାରିଲାଣି । ଦିନ ଥିଲା ସେ ଏକା ରହୁଥିବାବେଳେ ବରୁନ୍‌ର ଭାବନା ତାକୁ ମାନସିକ ସ୍ତରରେ ଏକା ଅନୁଭବ କରିବାର ସୁଯୋଗ ଦେଉନଥିଲା । କିନ୍ତୁ ଆଜି ଜୀବନର ଏହି ଅସହାୟ ମୁହୂର୍ତ୍ତରେ ସେ ଅନୁଭବ କରୁଛି ସତେ ଯେମିତି ସୁଖ, ଶାନ୍ତି, ସ୍ୱାଚ୍ଛନ୍ଦ୍ୟ ଏବଂ ଐଶ୍ୱର୍ଯ୍ୟ ଏକା ସାଙ୍ଗରେ ତା’ ଉପରେ ଅଭିମାନ କରି ମୁହଁମୋଡି ଚାଲିଯାଇଛନ୍ତି । ସେ କିନ୍ତୁ ନିଜ ମନକୁ ମନ ଆଶ୍ୱସ୍ତ କରାଏ ସେମାନେ ସମସ୍ତେ ଦିନେ ସେମାନଙ୍କର ଅଭିମାନକୁ ଦୂର କରି ତା’ ପାଖକୁ ଲେଉଟି ଆସିବେ ଏବଂ ନିଃସର୍ତ୍ତରେ ଆଲିଙ୍ଗନ କରିବେ ।

ଶୁଭଦାର ଏକାପଣ ଆଉ ଏପରି ମାନସିକତାରେ ତା'ବାପାମାଆଙ୍କ ଚିନ୍ତା ଦିନକୁ ଦିନ ବଢ଼ିବାରେ ଲାଗିଲା। ବାପା ଚାହିଁଲେ ଝିଅ ତାର ତା' ଅତୀତକୁ ପଛ କରି ସୁଖରେ ସଂସାର କରୁ । କିନ୍ତୁ ଶୁଭଦାର ମାନସିକ ସ୍ଥିତିକୁ ବିଚାର କରି ସେ ତାକୁ ସିଧାସଳଖ କିଛି କହିପାରୁନଥିଲେ । ଶୁଭଦା ନିଜକୁ ଏକା ରଖିବା ପାଇଁ  ଚାହୁଁଥିଲା । ଧିରେ ଧିରେ ଏକାକୀତ୍ୱର ବ୍ୟାଧି ଶୁଭଦାକୁ ସଂକ୍ରମିତ ହେଲା ।

ପ୍ରେମର ସଂସ୍ପର୍ଶରେ ଆସିଥିବା ଆଉ ପ୍ରେମକୁ ହରାଇଥିବା ଏକ ପରାଜିତ ନାୟିକା ପରି ସେ ତା' ପରିଣିତା ବୟସରେ ନିଜକୁ ନିୟନ୍ତ୍ରଣ କରିବାରେ ଖୁବ୍ ଯନ୍ତ୍ରଣା ପାଉଥିଲା । ଏକଥା ତା' ବାପା ମାଆ ଜାଣିସାରିଥିଲେ। ଆଉ ଯେତେବେଳେ ପୁରୁଷ ଦେହର ଅଭାବରେ ତାକୁ ଥରାବାତ ଛୁଇଁଲା ଡାକ୍ତର କହିଲେ ଜଲ୍‌ଦି ବାହାଘର କରିଦିଅ। ଡାକ୍ତରଙ୍କ କଥାକୁ ଅମାନ୍ୟ ନକରି ବାପା ଗାଆଁ ପୁରୋହିତଙ୍କୁ ଖବର ଦେଲେ ଯେତେଶୀଘ୍ର ହେଉ ଶୁଭଦା ନିମନ୍ତେ ବରପାତ୍ର ଯୋଗାଡ କରିବାକୁ । କିଛିଦିନ ପରେ ଗାଁ ପୁରୋହିତ ଖବର ଦେଲେ। ତାଙ୍କ ଗାଁଠାରୁ ଛଅସାତ ଖଣ୍ଡ ଗାଁ ଦୂରରେ ଥିବା କୋଇଲିପୁର ଗାଁରେ ଭଲ ପ୍ରସ୍ତାବଟିଏ ଅଛି। ଉଚ୍ଚ ବଂଶଜ। ଜମିଦାର ପରିବାର। ବାପ-ମା'ଙ୍କର ଏକମାତ୍ର ସନ୍ତାନ। ଅଚଳାଚଳ ସମ୍ପତ୍ତି। ରକ୍ଷଣାବେକ୍ଷଣ ପାଇଁ ଦଶବାର ଚାକର ବାକର ଦିନରାତି ଖଟୁଛନ୍ତି। ଦେଖିବାକୁ ପିଲାଟି ଖୁବ୍ ସୁନ୍ଦର। ଗାଁ ପୁରୋହିତଙ୍କଠାରୁ ଶୁଭଦା ନିମନ୍ତେ ଏପରି ପ୍ରସ୍ତାବଟି ଶୁଣି ଶୁଭଦାର ବାପା ଖୁବ୍ ଖୁସି ହୋଇପଡିଲେ। ଜାତକ ସୁଝା ସରିଲା। ଶେଷରେ ବାପା ଶୁଭଦାର ମତାମତ ମାଗିଲେ । କିନ୍ତୁ ଶୁଭଦା ସମ୍ପୂର୍ଣ୍ଣ ମନା କରିଦେଲା ସେ ବିବାହ କରିବ ନାହିଁ ବୋଲି ନିଷ୍ପତ୍ତି ନେଇସାରିଛି । ତା'ର ବିବାହ ପ୍ରତି ଆଉ ଆକର୍ଷଣ ନାହିଁ ଏକଥା ଖୋଲାଖୋଲି ଭାବେ ପ୍ରକାଶ କରିଦେଲା ଏବଂ ଭୋ ଭୋ ହୋଇ କାନ୍ଦିବାକୁ ଲାଗିଲା। ସେହି ଦିନଠାରୁ ଆଉ ଶୁଭଦାର ବାହା ଘର କଥା କେହି ଉଠାଇଲେନାହିଁ । କିନ୍ତୁ ଏତେ ବଡ଼ ଦୁନିଆଁରେ ଏକା ରହିବ କେମିତି ? ଚଳିବ କିପରି ? ଏ ସମାଜ କ'ଣ ତାକୁ ଭଲରେ ରଖାଇଦେବ ? ବାସ୍, ଏହିସବୁ ଚିନ୍ତାରେ ଶୁଭଦାର ବାପା, ମାଆ ଖୁବ୍ ବ୍ୟତିବ୍ୟସ୍ତ ହୋଇ

ପଡୁଥିଲେ ଦିନକୁ ଦିନ। ବାପା-ମାଆଙ୍କୁ ତା' ପାଇଁ ସାହି ପଡ଼ିଶାରୁ ଅନେକ କଥା ଶୁଣିବାକୁ ପଡ଼ିଲା। ସେ ପଡ଼ୋଶୀଙ୍କ ଆଖିରେ ଘୃଣା ଓ ସନ୍ଦେହର ଚିହ୍ନ ଦେଖିପାରିଲା। ଶେଷକୁ ନିଷ୍ପତ୍ତି ନେଲା ଆଉ ଘରେ ରହିବନି। ବାପା-ମାଆଙ୍କ ଦୁଃଖ ଦେଖି ଦିନେ ସେ ତା'ବାପାଙ୍କୁ କହିଲା, 'ତୁମେ ମୋତେ ଏତିକରୁ ଏତିକ କଲ, ମୋତେ ଏତେ ପାଠ ପଢ଼ାଇଲ, ମୁଁ ତୁମ ଉପରେ ବୋଝ ହେବାକୁ ଚାହୁଁନାହିଁ। ମୋତେ ଏମିତି ଖାଲି ବସି ବସି ଖରାପ ଲାଗୁଛି। ମୁଁ ପଢ଼ା ପଢ଼ି ଆରମ୍ଭ କରିବି ଚାକିରୀପାଇଁ। ଭଗବାନଙ୍କ ଦୟାରୁ ସେଇଟି ମିଳିଗଲେ ମୁଁ ଟିକେ ଶାନ୍ତି ପାଇବି। ଦୂରକୁ ଚାଲିଗଲେ ତୁମେ ବି ମୋ ପାଇଁ ବାର କଥା ଶୁଣିବନି। ଘରେ ଅଛି ବୋଲି ସିନା ତୁମକୁ ଆଜି ଲୋକଙ୍କ କଥା ଶୁଣିବାକୁ ପଡୁଛି ଏବଂ ମୁଁ ମଧ୍ୟ ଏଠାରେ ଶାନ୍ତିରେ ରହିପାରୁନି। ସବୁବେଳେ ଅତୀତ ମୋତେ ଯେମିତି ତାଚ୍ଛଲ୍ୟ କଲାପରି ଅନୁଭବ ହେଉଛି।'

ଏତକ କହି ସେ କିଛିକ୍ଷଣ ଧୈର୍ଯ୍ୟଚ୍ୟୁତ୍ ହୋଇପଡ଼ିଲା ଏବଂ ପୁନଶ୍ଚ ବରୁନ୍‌କୁ ଆକ୍ଷେପ କରି ନିଜେ ହିଁ ନିଜକୁ କହି ଉଠିଲା, "ମୋତେ ଏମିତି କାହିଁକି କଲ ବରୁନ୍? ମୁଁ ତୁମର କ'ଣ କ୍ଷତି କରିଥିଲି, ଯାହା ପାଇଁ ଆଜି ମୋତେ ଓ ମୋ ପରିବାରକୁ ପ୍ରାୟଶ୍ଚିତ କରିବାକୁ ପଡୁଛି। ନିଶ୍ଚୟ ଏହା ମୋର ପୂର୍ବଜନ୍ମର କିଛି କର୍ମର ଫଳ। ଅବଶ୍ୟ ତୁମ ବିଶ୍ୱାସଘାତକତା ପାଇଁ ମୁଁ ଜୀବନର ବହୁତ ବଡ଼ ଶିକ୍ଷା ପାଇଯାଇଛି ଯେ, କାହା ଉପରେ ସହଜରେ ବିଶ୍ୱାସ କରିଯିବା ଉଚିତ୍ ନୁହେଁ। ତୁମର ଏହି ଶିକ୍ଷା ପାଇଁ ମୁଁ ସାରା ଜୀବନ ତୁମ ପ୍ରତି କୃତଜ୍ଞ ରହିବି। ଜୀବନ ରୂପକ ଜଟିଳତାକୁ ଚିହ୍ନାଇ ଦେବାକୁ ଯାଇ ତୁମେ ଯେ ମୋତେ ଯନ୍ତ୍ରଣାର କେଉଁ କୋଣରେ ଫିଙ୍ଗି ଦେଇଛ, ବୋଧହୁଏ ତୁମେ ବି ତା' ଅନୁମାନ କରିପାରୁନଥିବ। ତୁମେ ସେଦିନ ଠିକ୍ କହିଥିଲ ବରୁନ୍; ତୁମ ଜୀବନଟା ଏକ ନୌକା, ହେଲେ ତା' ଦେହରେ ଛିଦ୍ର କରି ନିଜେ ଖୁବ୍ ଖୁସି ଅନୁଭବ କର। ଏ ତୁମର କି ଖୁସି ବରୁନ୍? ଯେଉଁଠାରେ ଅନ୍ୟ ଜଣେ ତିଳ ତିଳ ହୋଇ ପ୍ରତି ମୁହୂର୍ତ୍ତରେ ଜଳୁଛି। ଏଥିରେ ତୁମେ କି ଆନନ୍ଦ ପାଉଛ? ଅନ୍ୟମାନଙ୍କ ପରି ତୁମେ ମଧ୍ୟ..."। ଏତକ କହି ଖୁବ୍ କାନ୍ଦି ଉଠିଥିଲା ଶୁଭଦା। କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ପୁଣି ନିଜ କାର୍ଯ୍ୟରେ

ମନ ଦେଲା। ସେ ପଢ଼ାପଢ଼ି ଆରମ୍ଭ କରିଥିଲା ଚାକିରୀ ଉଦ୍ଦେଶ୍ୟରେ। ଲଗାତାର କେତୋଟି ଚାକିରୀ ପାଇଁ ସେ ପରୀକ୍ଷା ଦେଇଥିଲା। ଯେକୌଣସି ଗୋଟିଏରେ କୃତକାର୍ଯ୍ୟ ହେବାର ଆଶା ରଖିଥିଲା। କେଇଦିନର ଉତ୍ତେଜନା, ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ପରିସ୍ଥିତି ପରେ ଘରେ ସ୍ୱଭାବିକତା ଫେରିଆସୁଥିବାର ସେ ଲକ୍ଷ୍ୟ କରୁଥିଲା। ତା' ପରିଶ୍ରମ ବ୍ୟର୍ଥ ହୋଇନଥିଲା। ଏକ ସରକାରୀ ଚାକିରୀ ପାଇଁ ସେ ମନୋନୀତ ହୋଇଥିଲା । ଯେଉଁଦିନ ସେ ଏହି ଶୁଭ ସମ୍ବାଦ ପାଇଥିଲା, ସେଦିନ ତା'ର ଖୁସିର ସୀମା ରହି ନଥିଲା। ଏକ ପ୍ରହେଳିକା ପୂର୍ଣ୍ଣ ତଥାକଥିତ ବାହାଘର ସ୍ୱପ୍ନର ଦୁଃଖଦ ପରିଣତି ପରେ ଯେଉଁ ଶୂନ୍ୟତା ତା'ଭିତରେ ସୃଷ୍ଟି ହୋଇଥିଲା ଏ ଚାକିରୀ ତାକୁ ପୂର୍ଣ୍ଣତାରେ ପରିଣତ କରିବାରେ ହୁଏତ ସାହାଯ୍ୟ କରିବ ବୋଲି ସେ ଅନୁଭବ କରିଥିଲା, କିନ୍ତୁ ସେ ଆଉ ଭବିଷ୍ୟତରେ ବାହାଘର ପରି ଏକ ଜଟିଳ ଗଣିତରେ ମୁଣ୍ଡ ପୁରାଇବ ନାହିଁ ବୋଲି ନିଷ୍ପତ୍ତି ନେଇସାରିଥିଲା। ବରୁନ୍‌କୁ ସେ ପ୍ରେମ କରି ନିଜର କରିସାରିଥିଲା । ବରୁନ୍ ତାକୁ ନିଜର କରୁ ବା ନକରୁ ତାର ସେଥିରେ କୌଣସି ଯାଏଆସ ନଥିଲା । ତେଣୁ ଆଉ କାହାକୁ ସ୍ୱାମୀ ରୂପରେ ପାଇ ତା'ପ୍ରତି ବିଶ୍ୱାସ ଆଣିବା ଯେମିତି ତା' ମାନସ ପଟରୁ ଉଭେଇ ଯାଇଥିଲା। ଜୀବନରେ ପୂର୍ଣ୍ଣତାର ଛକରେ ପହଞ୍ଚିବା ପାଇଁ ଅନେକ ରାସ୍ତା ଭିତରୁ ବାହାଘର ହୁଏତ ଗୋଟିଏ ରାସ୍ତା ହୋଇପାରେ। କିନ୍ତୁ ତାହା ଏକମାତ୍ର ରାସ୍ତା ନୁହେଁ। କିଛି ଦିନ ଗଲା ପରେ ତା'ର ନିଯୁକ୍ତି ପତ୍ର ପହଞ୍ଚିଲା। ଜୀବନର ତିକ୍ତ ଅନୁଭୂତି ସବୁକୁ ପଛ କରିଦେଇ ଏକ ଅଜଣା ଅଥଚ ସୁରକ୍ଷିତ ଭବିଷ୍ୟତ ଆରମ୍ଭ କରିବା ଆଶାରେ ସେ ନିଜକୁ ମାନସିକ ସ୍ତରରେ ପ୍ରସ୍ତୁତ କଲା । ତଥାପି ତା' ପ୍ରେମ ବରୁନ୍‌ର ସ୍ମୃତି କେତେବେଳେ କେମିତି ତାକୁ ଅବଚେତନ ଅବସ୍ଥା ଆଡକୁ ଟାଣି ନେଉଥିଲେ ତାର ଅଗୋଚରରେ ।

କଙ୍କନାକୁ ଛାତିରେ ଚାପି ରଖି ସେ ସତ ସତିକା ଜୀବନ କାଟୁଥିଲା, "ଗତ ସନ୍ଧ୍ୟାରେ ବରୁନ୍ ଅଫିସ୍‌ରୁ ଆସିବାକୁ ଡେରି କରିଥିଲେ । ନା, ସେକଥା ସେ ଆଗରୁ ଜଣାଇଥିଲେ, ନା' ବିଳମ୍ବରେ ଆସିବାନେଇ କ୍ଷମା ମାଗିଥିଲେ । ସବୁ ଦିନ ସନ୍ଧ୍ୟାରେ ସଜ ହୋଇ ସ୍ୱାମୀର ଆସିବା ବାଟକୁ ଚାହିଁ ରହିଥାଏ

ଶୁଭଦା । ବରୁନ୍‌ର ପ୍ରବେଶରେ ଘରଟା କେମିତି ଗୋଟିଏ ଅଲଗା ବାସ୍ନାରେ ମହକି ଉଠେ । ସେ ବାସ୍ନା ଆଉ କେଉଁଠି ପାଏନି ଶୁଭଦା । ସେ ବାସ୍ନାର ଅପେକ୍ଷାରେ ସେଦିନ ତାର ଧୈର୍ଯ୍ୟଚ୍ୟୁତ ଘଟିଲା । ତଥାପି ବରୁନ୍‌ର ମୁହଁ ଦେଖି ସେ ଭୁଲିଗଲା ତା'ର ଅଭିମାନକୁ । ବରୁନ୍ ଫ୍ରେସ୍ ହୋଇ ବାଥ୍‌ରୁମ୍‌ରୁ ବାହାରି ଆସି କହିଲେ, 'ତୁମେ ଖାଇନିଅ ମୋର ଗୋଟିଏ ପାର୍ଟିଥିଲା ମୁଁ ଖାଇନେଇଛି ।' ଏମିତି ତ କେବେ କରନ୍ତିନାହିଁ ବରୁନ୍। ଆଜି କାହିଁକି ଏପରି କଲେ ? ସେ ଅଭିମାନରେ ଖାଇଲାନାହିଁ। ଶୋଇବାକୁ ଖଟ ଉପରକୁ ଗଲାବେଳକୁ ବରୁନ୍ ଶୋଇସାରିଛନ୍ତି...।" କେମିତି ଅଲଗା ଅଲଗା ଲାଗିଲା ଶୁଭଦାକୁ, ଯେମିତି ସେ ଗୋଟିଏ ପରିବର୍ତ୍ତନ ସହ ପରିଚିତ ହେଉଛି ।

ହଠାତ୍ କବାଟ ବାଡ଼େଇବାର ଶବ୍ଦରେ ନିଦ ଭାଙ୍ଗିଗଲା ଶୁଭଦାର। 'ମାଆ ଉଠ୍ ଶୁଭ ! କାମଧନ୍ଦାସାରି ବାହାରିବାକୁ ପଡିବ ନହେଲେ ଫାଷ୍ଟ ବସ୍ ଚାଲିଯିବ ଯେ।' ବାପାଙ୍କ ଡାକରେ ଶୁଭଦାର ନିଦ ଭାଙ୍ଗିଲା। ଅଜାଣତରେ ତା' ହାତ ଚାଲିଗଲା ବରୁନ୍‌କୁ ଛୁଇଁବା ଉଦ୍ଦେଶ୍ୟରେ। ବରୁନ୍‌କୁ ନପାଇ ସେ ପ୍ରକୃତିସ୍ଥ ହେଲା କିନ୍ତୁ ବରୁନ୍‌ର ଉପସ୍ଥିତି ଅନୁଭବ କରି ସେ ତା' ହାତ ପାପୁଲିରେ ଗୋଟିଏ ଉଷ୍ମତା ଭରା ଚୁମ୍ବନ ଆଙ୍କି ଦେଲା ସତେ ଯେମିତି ବରୁନ୍‌ର ଗଣ୍ଡ ଦେଶରେ ଚୁମ୍ବନ ଦେଇଦେଉଛି।

ନିକଟରୁ ଝିଅକୁ ଦୂରେଇବା ଚାହୁଁନଥିଲେ ବି ଶୁଭଦାର ବାପା ତାକୁ ଚାକିରୀ ବାହାନାରେ ଅନ୍ୟତ୍ର ଦୂରସ୍ଥାନକୁ ଛାଡ଼ିଥିଲେ; ଭାବିଥିଲେ ଦୂରରେ ରହି ତା'ର ମନ ପରିବର୍ତ୍ତନ ହେବ। ହୁଏତ ବିବାହ ଉପରେ ନେଇଥିବା ନିଷ୍ପତ୍ତିଟି ତା'ର ବଦଳିଯିବ ? ଏଣୁ ତାକୁ ଆଉଟିକେ ଉତ୍ସାହିତ କରିବାପାଇଁ ବ୍ୟସ୍ତ କରିଲେ।

ବାପାଙ୍କ ମୁହଁରୁ ବହୁଦିନ ପରେ ଏପରି ସ୍ନେହାତୁର ସମ୍ବୋଧନ ଶୁଣି ଶୁଭଦା ଆହୁରୀ ଖୁସି ହୋଇପଡିଲା। କାରଣ ବରୁନ୍ ସହ ତା'ର ସମ୍ପର୍କକୁ ନେଇ ବାପା ତା'ଉପରେ ଅଧିକାଂଶ ସମୟ ଅଶାନ୍ତି ହେଉଥିଲେ। ଶୁଭଦା ଖୁବ୍ ସ୍ନେହ କାଙ୍ଗାଳି, ଏଣୁ ବାପାମାଆଙ୍କ ସ୍ନେହରୁ କେତେବେଳେ ଟିକିଏ କଡ଼ାକଥା ଶୁଣିଲେ ଅନେକ ଦିନ ଏମିତି ଦୁଃଖରେ ଦିନ କାଟିଦିଏ ସିନା କିନ୍ତୁ

ମୁହଁ ଖୋଲି ପ୍ରତିବାଦ କରେନି । ବରୁନ୍ ହଠାତ୍ ଯେପରି ତା' ଜୀବନରେ ଝଡ଼ଟିଏ ପରି ଆସି ତା' ବାପା ମାଆଙ୍କ ସ୍ନେହ ମମତାରୁ ତାକୁ ଖୁବ୍ ଦୂରକୁ ଟାଣି ନେଇଥିଲା। ଏବେ ବାପାଙ୍କ ମୁହଁରୁ ଏପରି ସ୍ନେହବୋଳା କଥା ପଦକ ଶୁଣି ଚାକିରୀ ପାଇବା ଖୁସିସହ ଯେପରି ତା'ର ଆନନ୍ଦ ଦ୍ୱିଗୁଣିତ ବଢ଼ିଯାଇଥିଲା। ବାପାଙ୍କ ଡାକରେ ଉତ୍ତର ଦେବାକୁ ଯାଇ ସେ କହିଲା, 'ବାପା, ତୁମେ ଯାଅ ମୁଁ କେତେବେଳୁ ଉଠିଲିଣି। ବିଛଣାରେ ବସିଥିଲି। ମୁଁ ରେଡି ହେଉଛି । ବାପାଙ୍କ ଚାଲିଯିବା ପରେ ବିଛଣାରେ ବସି ଏହି ଘର ଏହି ଅଗଣା, ଯେଉଁଠାରେ ଦିନେ ମନଖୋଲା ଖେଳଖେଳି ହସୁଥିଲା, ଏସବୁ ଭାବି ଭାବି ଦୁଃଖିତ ହେଉଥିଲେ ହେଁ ନୂତନ କର୍ମସ୍ଥାନକୁ ଯାଇ ଯୋଗ ଦେବାରେ ଅଧିକ ଖୁସି ସେ ଅନୁଭବ କରୁଥିଲା। କାରଣ ଏହି ଅଗଣା ଆଉ ଏହି ଦୁଆର ଯାହାଦିନେ ତାକୁ ବଞ୍ଚାଇବାର ରାହା ଦେଖାଉଥିଲା ଆଜି ଆଉ ତାକୁ ଆଡ ଆଖିରେ ଚାହୁଁନାହାନ୍ତି । ଯାହାସବୁ ଦିନେ ତାର ନିଜର ଥିଲା, ସତେ ଅବା ସେସବୁ ତା'ଠାରୁ ବର୍ତ୍ତମାନ ବହୁତ ଦୂରକୁ ଚାଲିଯାଉଛନ୍ତି। ନିଜ ଲୋକମାନଙ୍କ ଗହଣରେ ଥାଇ ମଧ୍ୟ ସେ ଖୁବ୍ ଏକାକୀ ମନେ କରୁଛି। ତେଣୁ ସେ ସ୍ଥିର କରିନେଇଛି ଏସବୁଠାରୁ ସେ ବହୁ ଦୂରକୁ ଚାଲିଯିବ । ଏକ ଅନିଶ୍ଚିତ ଭବିଷ୍ୟତ ଆଉ ଏକ ଆହତ ଅତିତ ଭିତରେ ସେ ବଞ୍ଚିବାର ସାହାସ ଯୁଟାଉଥିଲା । ଅତୀତ ଆଘାତ ଦେଉଥିଲା ସତ ତଥାପି ସେ ସ୍ମୃତିରେ ବଞ୍ଚି ରହିଥିଲା କିଛି କିଛି ମିଠାପଣ । ଭବିଷ୍ୟତ ଅନିଶ୍ଚିତ ଲାଗୁଥିଲା ସତ ତଥାପି ବଞ୍ଚିବାର ସାହାସ ତାକୁ ଝାପ୍‌ସା ଝାପ୍‌ସା ଦେଖାଯାଉଥିଲା ।

ଶୁଭଦା ବେଡ଼ରୁ ଉଠିଯାଇ ଝର୍କା ଖୋଲିଦେଲା। ପରଦାକୁ ରେଲିଂରେ ଗୁଞ୍ଜିଦେଇ ସେଇଠି ଠିଆ ହୋଇଗଲା। ଦେଖିଲା, ପୂର୍ବ ଆକାଶରେ ଗୋଟିଏ ସ୍ୱର୍ଣ୍ଣାଭ ସକାଳର ପ୍ରତିଶ୍ରୁତି ସହ ସୂର୍ଯ୍ୟ ଉଠିଆସୁଛି। ବହୁଦିନ ପରେ ସେ ଏହି ସୂର୍ଯ୍ୟୋଦୟ ଦେଖୁଥିଲା ଖୁବ୍ ଭଲ ଲାଗୁଥିଲା ତାକୁ ଏଇ ଦୃଶ୍ୟ। ଆଜି ବି ତା' ଜୀବନରେ ପୁନଶ୍ଚ ସୂର୍ଯ୍ୟୋଦୟ ଘଟିଯାଇଛି। ତା' ଜୀବନରେ ବରୁନ୍ ଆସିବା ପୂର୍ବରୁ ସେ ଏମିତି ସୂର୍ଯ୍ୟୋଦୟର ସ୍ୱପ୍ନ ଦେଖିଥିଲା। କିନ୍ତୁ ସୂର୍ଯ୍ୟ ଉଇଁବା ଆଗରୁ ତା'ଅଜାଣତରେ ତା' ଜୀବନର ପଶ୍ଚିମ ଦିଗରେ

କେତେବେଳେ ଯେ ସୂର୍ଯ୍ୟ ତା'ଠୁଁ ଲୁଚି ଯାଇ ଅସ୍ତ ହୋଇଗଲେ ତାକୁ ଜଣାନଥିଲା । ସେ ଆଖି ଖୋଲିଲାବେଳକୁ ଅନ୍ଧକାର ଛଡା କିଛି ବାକି ନଥିଲା ତଥାପି ଅନ୍ଧାରର ଜହ୍ନ ଆଉ ତାରାମାନଙ୍କର ଆଲୁଅକୁ ସାଥୀ କରି ବଞ୍ଚିବାର ଦୃଢ଼ ଶପଥ ନେଲା ।

ଆଲୋକିତ ଦିନଟିଏ ତା'ପାଇଁ ଅପେକ୍ଷା କରିଛି। ସେ ଜାଣିଛି ତା' ଜୀବନରେ ଏ ସୂର୍ଯ୍ୟୋଦୟର ପରେ ବି ହୁଏତ କିଛି ଅନ୍ଧାର ରହିଯିବ। ତେବେ ସେ ଏଥିପାଇଁ ବିବ୍ରତ ହେବାର ପ୍ରଶ୍ନ ଉଠୁନାହିଁ। ସେ ଅନାଗତ ଅନ୍ଧାରକୁ ସାମନା କରିବା ପାଇଁ ଦିନର ଆଲୁଅ ହିଁ, ତାକୁ ବାଟ ଦେଖାଇବ, ସାନ୍ତ୍ୱନା ଦେବ...।



ବର୍ତ୍ତମାନ ନିଜ ଜନ୍ମସ୍ଥାନରୁ ଅନେକ ଦୂରରେ ଶୁଭଦା। ଶାନ୍ତ ସ୍ନିଗଧ୍ ସୁକୋମଳ ପରିବେଶ। ବରୁନ୍‌ଠାରୁ ପ୍ରତାରିତ ହେବାପରେ ସେ ଖୋଜୁଥିଲା ଗୋଟିଏ ପରିବର୍ତ୍ତନ। ଯାହାକି ସେ ଏବେ ପାଇଗଲା। ସେଠି ଆଉ ଅତୀତର ଆଘାତ ନଥିଲା ତାକୁ ବିବ୍ରତ କରିବା ପାଇଁ କି ରକ୍ତ ସମ୍ପର୍କମାନଙ୍କର କଟୁକ୍ତି ନଥିଲା ତାର ଯନ୍ତ୍ରଣାର କାରଣ ହେବା ପାଇଁ। ଏବେ ଏଠି ନୂଆ ପରିବେଶ, ନୂଆ ମଣିଷ, ନୂଆ ଭାବନା ଆଉ ନୂଆ ନୂଆ ସ୍ୱପ୍ନମାନଙ୍କୁ ନେଇ ସେ ବଞ୍ଚିବା ଆରମ୍ଭ କରିବ । ତଥାପି ବେଳେ ବେଳେ ସେ ସମୟ ସହିତ ହିସାବନିକାଶ କରେ ପାଇବାକୁ ନେଇ ଆଉ ହରେଇବାକୁ ନେଇ ଆଉ ହିସାବର ଫଳ ଯାହା ପାଇଲେ ବି ଭିତ ଭିତରେ ସେ ଅନୁଭବ କରେ ଏକାପଣକୁ ଆଉ ନିଃସଙ୍ଗତାକୁ। ଶୁଭଦା ଲାଗି ଆତ୍ମସନ୍ତୋଷର ପ୍ରକାଣ୍ଡ ଉପଲବ୍ଧ ଭିତରେ ମଧ୍ୟ ଆତ୍ମସ୍ଥ ହେବାଲାଗି ବାହାନାଟିଏ ମିଳିଯାଏ ଏ

ଚାକିରୀ ମାଧ୍ୟମରେ। ଆପଣାର କେହି ଆକସ୍ମିକ ଭାବେ ପୃଥିବୀରୁ ହଜିଗଲେ, ବିଦାୟ ନେଇଗଲେ ତା' ସହ ସଂଶ୍ଳିଷ୍ଟ ପ୍ରାରମ୍ଭ ମୂହୁର୍ତ୍ତରୁ ଅନ୍ତିମ ମୁହୁର୍ତ୍ତ ପର୍ଯ୍ୟନ୍ତ ସବୁ ଦୃଶ୍ୟ ଚଳଚ୍ଚିତ୍ର ପରି ମନର ପରଦାରେ ନିରବଚ୍ଛିନ୍ନ ଭାବରେ ଦୃଶ୍ୟ ହୋଇଯାଏ ଯେମିତି । ଦୁଃଖଦ ଚଳଚ୍ଚିତ୍ରଟିଏ ଦେଖି ଦର୍ଶକର ଆଖିରୁ ଲୁହ ଝରିବା ପରି ଶୁଭଦା ଆଖିରୁ ଲୁହତକ ରୁନ୍ଧି ହୋଇ ବାଟ ଫଟେଇ ଝରି ଆସିବାକୁ ଅସ୍ତବ୍ୟସ୍ତ ହେଉଥିଲା ଯେମିତି। ପ୍ରଚଣ୍ଡ ଆଶ୍ୱସ୍ତି ଆଉ କୋହର ଫେଣ୍ଟାଫେଣ୍ଟି ଭାବନାଟିଏ ଛାତି ଭିତରେ ଜାଗା କରି ନେଇଥିଲା। ନୀରବତାର ଭାବ ଛାଇ ହୋଇଯାଉଥିଲା ଆଖିର ଆକାଶରେ ଏବଂ ଶୁଭଦା ତାକୁ ଢ଼ୋକି ନେଉଥିଲା ନିର୍ଦ୍ୱନ୍ଦରେ ଏକ ଅର୍ନ୍ତହୀନ ବିଶ୍ୱାସର ବଳୟ ଭିତରେ। ତା'ପରେ ଯେତେ ଚରିତ୍ରଙ୍କର ସମାବେଶ ହୋଇଥିଲା ତା' ଜୀବନରେ ସମସ୍ତେ ଥିଲେ ଶୁଭଦାର ଆପଣାର ରକ୍ତ ସମ୍ପର୍କର। ସେହି ମାନଙ୍କୁ ଛାଡ଼ି ଚାଲି ଆସିଛି ଏତେ ଦୂର କେବଳ ସେହି ଆଘାତଠାରୁ ଏବଂ ବିଶ୍ୱାସଘାତକ ବରୁନ୍‌ଠାରୁ ନିଜକୁ ଦୂରେଇ ରଖିବା ପାଇଁ। କିନ୍ତୁ ବେଳେ ବେଳେ ମନରେ ପଶ୍ନ ଉଠେ ସଂପର୍କକୁ ଦୂରେଇଦେବା ପ୍ରଚେଷ୍ଟାରେ ସେ ନିଜକୁ ନିଜଠାରୁ ଦୂରେଇ ଦେଉନାହିଁ ତ ? ତଥାପି ଯନ୍ତ୍ରଣାରୁ ମୁକ୍ତି ପାଇବା ଆଶାରେ ସେ ସମସ୍ତ ପ୍ରକାର ବୁଝାମଣା କରିବାକୁ ନିଜକୁ ଯେମିତି ପ୍ରସ୍ତୁତ କରିସାରିଥିଲା । ଶାନ୍ତିର ପ୍ରକୋଷ୍ଠକୁ ସ୍ପର୍ଶ କରିବା ଯେମିତି, ତା' ଭାଗ୍ୟରେ ନାହିଁ। ଟିକେ ଆଶ୍ୱସ୍ତି ପାଇବାକୁ କେତେବେଳେ କେମିତି ଝର୍କା ଖୋଲି ସେ ଠିଆ ହୋଇଯାଏ ଶୀତଳ ପବନକୁ ଛୁଇଁବା ପାଇଁ। ଝର୍କା ଖୋଲିବା ମାତ୍ରେ ଥଣ୍ଡା ପବନ ସହ ଛୁଇଁଯାଏ ଶିଶିରର ଥଣ୍ଡା ଥଣ୍ଡା ଜଳବିନ୍ଦୁ। କିଛିକ୍ଷଣ ସ୍ତମ୍ଭିଭୂତ ହୋଇପଡ଼ି ସେ ବାହାରେ ବର୍ଷୁଥିବା ବର୍ଷାକୁ ଚାହିଁଲା ଆବାକ୍ ହୋଇ ବର୍ଷାରେ ସତେ ଅବା ବରୁନ୍ ସହ ସିଏ ବି ଭିଜୁଥିଲା। ଶ୍ରାବଣର ସେହି ଭିଜା ଭିଜା ଅନୁଭବରେ ସେ ଅନୁଭବ କରୁଥିଲା ପ୍ରେମର ସେହି ପବିତ୍ର ମୁହୂର୍ତ୍ତକୁ ଆଉ ଆଘାତର ସେହି ଯନ୍ତ୍ରଣା ସମୟକୁ। ବର୍ଷା ଭିତରେ ବରୁନ୍ ଆଦିଗନ୍ତ ବ୍ୟାପି ଯାଇଥିଲା ଏବଂ ଧରଣୀକୁ ଶୀତଳ କରିବା ବାହାନାରେ ତାକୁଇ ଛୁଇଁ ଯାଉଥିଲା ବାରମ୍ବାର। ହଠାତ୍ ଚମକି ପଡ଼ି ପ୍ରକୃତିସ୍ଥ ହୋଇଗଲା ଶୁଭଦା। ନିଜକୁ ନିଜେ କହିଉଠିଲା, "ତୁମଠାରୁ ଦୂରେଇ

ଯାଉ ଯାଉ ନିଜଠାରୁ ନିଜକୁ ହଜାଇବାକୁ ପଡିଲା ଏକଥା ମନରେ ଆସିଲେ ଆଶ୍ଚର୍ଯ୍ୟ ଲାଗୁଛି।"

ପ୍ରଥମ ଦେଖାରେ ଶୁଭଦା ବରୁନ୍‌ପ୍ରତି ଆକର୍ଷିତ ହୋଇ ନଥିଲା। ବରୁନ୍ ନିଜର ଆକର୍ଷଣକୁ ସଫଳତାର ସହିତ ଶୁଭଦା ପାଖରେ ପହଞ୍ଚାଇ ପାରିଥିଲା। ଆଖିରେ ଆଖିରେ ଆରମ୍ଭ ହୋଇଥିବା ପ୍ରେମ ଆପେ ନିଜ ରାସ୍ତା ବାଛି ନେଲା। କିନ୍ତୁ ସରଳ ଆଉ ସମତଳ ଲାଗୁଥିବା ରାସ୍ତା ଆଗରେ ଯେ କଣ୍ଟାଝଣ୍ଟା ଆଉ ଖାଲଢ଼ିପକୁ ସ୍ୱାଗତ କରୁଛି ସେ କଥା ଶୁଭଦାକୁ ଅଜଣା ଥିଲା। ଆଉ ଯେତେବେଳେ ସେ ଅନୁଭବ କଲା ସେଇ କଣ୍ଟାଝଣ୍ଟା ରାସ୍ତାରେ ଚାଲିବାଟା ଯେ ଅସମ୍ଭବ ସେ ଅଟକି ଯିବାର ନିଷ୍ପତ୍ତି ନେଲା। ପ୍ରେମର ରାସ୍ତାରେ ଅଟକିବା କ'ଣ ଏତେ ସହଜ କଥା...? ଦେହର ଶିହରଣକୁ ଛାତିର କୋହ ଭିତରେ ଚାପି ଧରିବାର ଅଦମ୍ୟ ଉଦ୍ୟମ ହେଉଛି ପ୍ରେମରୁ ଓହରି ଆସିବା। ଶୁଭଦା ମଧ୍ୟ ଓହରି ଆସିଥିଲା ସେଇ ଭାବକୁ ଛାତିରେ ଜାକି ଧରି। ପ୍ରେମିକଠାରୁ ସିନା ଶୁଭଦା ଦୂରେଇ ଗଲା କିନ୍ତୁ ପ୍ରେମଠାରୁ ଦୂରେଇବା ତା' ପାଇଁ ଅସମ୍ଭବ ଥିଲା। ସେ ନିଷ୍ପତ୍ତି ନେଲା ବାକି ଜୀବନ ପ୍ରେମରୁ ସାଉଁଟିଥିବା ଅନୁଭୂତିକୁ ନେଇ ବଞ୍ଚିବ। ସଂକଳ୍ପ କରିନେଲା ଜୀବନରେ ଦ୍ୱିତୀୟ ପୁରୁଷ ଗ୍ରହଣ କରିବ ନାହିଁ। ସେ ସେଇ ପ୍ରେମିକ ପାଖରେ ଶେଷ କରିଦେଲା ଜୀବନର ରଙ୍ଗୀନ ଚିତ୍ରପଟକୁ। ହୃଦୟ ଭିତରର ଅବ୍ୟକ୍ତ କୋହ ଦୋହଲାଇ ଦେଉଥିଲା ତାର ସତ୍ତା। ଅନ୍ତଃକରଣରେ ସେ ଶିହରି ଉଠୁଥିଲା। ଏମିତି ବେଳେ ବେଳେ ଶୁଭଦା ଦୀର୍ଘ ନିଶ୍ୱାସ ଛାଡ଼େ, ଅନ୍ତର ଭିତରୁ କାନ୍ଦେ। ଦ୍ୱନ୍ଦ ଭିତରେ ଅଣନିଶ୍ୱାସୀ ହୋଇପଡ଼େ। ବିଶ୍ୱାସହୀନ ଆକାଶ ଆଉ ଆସ୍ଥାହୀନ ପୃଥିବୀ ଉପରେ କେତେ ଦିନ ଭରସା କରିପାରିବ ଶୁଭଦା ଏକାଏକା? ଯେଉଁ ଶୁଭଦା ତା'ର ସମଗ୍ର ଜୀବନ ଜଣକ ପାଦ ତଳେ ଉତ୍ସର୍ଗ କରିଦେଇଥିଲା ନିର୍ବିବାଦରେ, ବିନା ଦ୍ୱିଧାରେ, ଯାହା ପାଇଁ ସେ ଢ଼କଢ଼କ କରି ପିଇ ଯାଇଥିଲା ଯନ୍ତ୍ରଣାର ଗରଳ ସିଏ ତାକୁ ମିଥ୍ୟା ଅପବାଦର ଜାଲରେ ଛନ୍ଦି ରଖିଥିଲା କେବଳ କ୍ଷଣିକ ସୁଖପାଇଁ। ସେ ଯଦି ପ୍ରେମିକର ସେଇ ଚକ୍ରାଂତକୁ ଠିକ୍ ସମୟରେ ଜାଣିପାରି ନଥାନ୍ତା ହୁଏତ ପ୍ରତାରଣାର ହୁତୁହୁତୁ ନିଆଁରେ ପାଉଁଶ ହୋଇସାରନ୍ତାଣି, ତା'ର

ଭାବନା, ତାର ଅନୁଭବ ଆଉ ତା'ର ମାନସିକ ସ୍ଥିତି । ଏପରି ଲମ୍ପଟ ପୁରୁଷ ପ୍ରତି ତା' ମନରେ ଘୃଣାର ଭାବ ଆସୁଥିଲା ସତ କିନ୍ତୁ ଯେତେବେଳେ ହୃଦୟର ନିଭୃତ କୋଣରେ ତାକୁ ସ୍ୱାମୀର ସ୍ଥାନ ଦେଇସାରିଛି ଅଭିଶାପ ଦେବା ପାଇଁ ତା' ଜିଭ ଲେଉଟୁ ନଥିଲା । କେବଳ ଅନୁଭବ ଆଉ ଭାବନାକୁ ପ୍ରେମ କରି ସେ ପ୍ରେମିକର ଅବାସ୍ତବ ପ୍ରେମଠାରୁ ଦୂରେଇ ଯିବାକୁ ଉଚିତ୍ ମନେକଲା ।

ଖୋଲା ଝର୍କା ଡେଇଁ ଜହ୍ନର ଆଲୁଅ ସତେ ଯେମିତି କାହାକୁ ଖୋଜୁଥିଲା ଶୁଭଦା ଘରେ । ଜହ୍ନ ଆଲୁଅକୁ ଦେଖି ଅଜାଣତରେ ଝର୍କା ପାଖରୁ ଚାଲିଗଲା ଶୁଭଦା। ଝର୍କାର ରେଲିଂକୁ ଦେଖି ଚାହିଁଲା ଆକାଶକୁ । ଆକାଶରେ ଅଧା ଜହ୍ନ ପୁରା ଚିକ୍‌ମିକ୍ ହୋଇ ହସୁଥିଲା । ନିର୍ମଳ ଆକାଶରେ ଭିଣାତୁଳା ପରି ମେଘ ଖଣ୍ଡଗୁଡ଼ିକ ଏଣେ ତେଣେ ଭାସି ବୁଲୁଛନ୍ତି। ଜହ୍ନ ଆଉ ମେଘ ଭିତରେ କିଏ ଯେ କାହାକୁ ଛାଡି କାହା ପାଖକୁ ଦଉଡୁଛି ସେସବୁର ଦ୍ୱନ୍ଦ ଭିତରେ ଶୁଭଦା କେମିତି ଗୋଟିଏ ଅପ୍ରାକୃତିକ ଭାବନା ମଧ୍ୟକୁ ଟାଣି ହୋଇଗଲା । ଜହ୍ନ ଆଉ ମେଘର ଦଉଡରେ ସେ ସାମିଲ ହେବାକୁ ହୁଏତ ଚାହୁଁଥିଲା କିନ୍ତୁ ପ୍ରକୃତି ଆଉ ପରିବେଶର ମିଳିତ ଆଘାତ ତାକୁ ସ୍ଥାଣୁ କରି ସାରିଥିଲା । ଯେଉଁ ଝର୍କାର ଫାଙ୍କରେ ଭିଜା ଭିଜା ବର୍ଷା ଭିତରେ ତା' ପ୍ରେମ ଭିଜିବାର ଦୃଶ୍ୟ ଯେଉଁ କିଛି ମୁହୂର୍ତ୍ତ ଆଗରୁ ସେ ଦେଖି ସାରିଥିଲା ବର୍ତ୍ତମାନ ନିର୍ମଳ ଆକାଶର ସେଇ ଅଧା ଜହ୍ନ ସତେ ଅବା ତାକୁ ଆଶ୍ୱସ୍ତ ଦେଉଛି ନିଜ ଉପରେ ବିଶ୍ୱାସର, ଭରଷାର ଦିନେ ସବୁ କିଛି ଠିକ୍ ହେବ ତୁ ପୂର୍ଣ୍ଣତା ଅନୁଭବ କରିବୁ ଠିକ୍ ଯେମିତି ମୁଁ ଦିନକୁ ଦିନ ପୂର୍ଣ୍ଣତା ଆଡକୁ ଗତି କରୁଛି। ସଂପୂର୍ଣ୍ଣରୁ ଅସଂପୂର୍ଣ୍ଣ ଆଉ ଅସଂପୂର୍ଣ୍ଣତାରୁ ସଂପୂର୍ଣ୍ଣତା ଏ ତ ପ୍ରକୃତିର ନିୟମ।  ପୁଣି ଆଖିରେ ପଡ଼ିଲା ସେଇ ଅଧା ଜହ୍ନ। ସତରେ ଏଇ ଜହ୍ନ ଆସିଥିଲା ଦିନେ ଯୌବନର ପୂର୍ଣ୍ଣତା ଭିତରେ ପୂର୍ଣ୍ଣିମାର ଶୁଭ୍ର ପଣତରେ। ଖଣ୍ଡି ଖଣ୍ଡି ହୋଇ କେତେ ଛୋଟ ହୋଇଗଲାଣି ସତେ। ଆଉ କିଛିଦିନ ପରେ ଅମାବାସ୍ୟାର ଅତଳ ଶୂନ୍ୟତା ଭିତରେ ଲୁଚିଯିବ। ତଥାପି ନୂଆ ଆଶା ନେଇ ପୁଣି ଭାବେ। ଆଲୋକ ଦେଇ ଦେଇ ଅନ୍ଧାରର ମହାଶୂନ୍ୟତା ଭିତରେ ନିଜକୁ ହଜାଇ ଦେବାରେ ହିଁ ତ ଆନନ୍ଦ। କାନ୍ଥରେ ଝୁଲୁଥିବା ଘଣ୍ଟା ରାତି ଦୁଇଟାର ସୂଚନା ଦେଲା ।

ପେଟରେ ଭୋକ ଅଥଚ  ଖାଇବାକୁ ଜମା ବି ଇଛା ହେଉ ନଥିଲା ତାକୁ। ବାପା ନୂଆ ଘର ଛାଡ଼ି ଦେଇ ସନ୍ଧ୍ୟାବେଳେ ଚାଲିଯିବାପରେ ସେ ଖୁବ୍ ଏକାକୀ ହୋଇପଡ଼ିଛି। ଏକାପଣ ତାକୁ ଅନିଚ୍ଛା ସତ୍ତ୍ୱେ ଘୋଷାରି ନେଉଛି ସେଇ ଯନ୍ତ୍ରଣାମୟ ଅତୀତକୁ। ଯେଉଁଠି ପ୍ରେମର ପ୍ରତ୍ୟୟ ତାକୁ ଆନନ୍ଦର ଖୋରାକ ଯୋଗାଉଥିଲେ ମଧ୍ୟ ଆଘାତର ଶକ୍ତି ଆଗରେ ତାର ବର୍ତ୍ତମାନ ଯନ୍ତ୍ରଣାସିକ୍ତ ହୋଇପଡୁଥିଲା । ସକାଳୁ ଉଠି ଶୀଘ୍ର ଅଫିସ୍ ଯିବାକୁ ହେବ । ଚାକିରୀ ଜୀବନର ପ୍ରଥମ ଦିନ ଅତୀତକୁ ପଛ କରି ନୂଆ ଜୀବନ ଗଢ଼ିବାର ପ୍ରୟାସ । ସେ ନିଷ୍ପତ୍ତି ନେଲା କାଲି ସକାଳର ସୂର୍ଯ୍ୟୋଦୟ ପରେ ସେ ଅସ୍ତ କରିଦେବ ତା'ର ଅତୀତକୁ । କେବେ ବି ଅତୀତର ଫର୍ଦ୍ଦକୁ ଆଉ ଲେଉଟାଇବ ନାହିଁ କି ଭାବନା ଭିତରେ ବୁଡ଼ି ରହି ଅବଶୋଷ ଆଡକୁ ଟାଣି ହୋଇ ଯିବ ନାହିଁ। ଭଗବାନଙ୍କୁ ପ୍ରାର୍ଥନା କଲା ନୂଆ ସକାଳ ତା'ପାଇଁ ଯନ୍ତ୍ରଣାମୁକ୍ତ ଭବିଷ୍ୟତ ଆଣୁ।



ଅପରପକ୍ଷରେ ବରୁନ୍ ଶୁଭଦାର କୌଣସି ଖୋଜ ଖବର ନପାଇ ଅସ୍ତବ୍ୟସ୍ତ ହୋଇପଡୁଥିଲା । ସତେ ଅବା କିଏ ତା' ହୃଦ କନ୍ଦରରୁ ଆତ୍ମାକୁ କାଢ଼ି ନେଇଯାଇଛି । ସେ ତା' ଜୀବନ କାଳ ଭିତରେ ପ୍ରତାରିତ କରିଥିବା ଝିଅମାନଙ୍କ ଭିତରୁ ସତେ ଯେମିତି ଶୁଭଦା ପାଖରେ ହିଁ ପ୍ରାୟଶ୍ଚିତ କରିବାର ବାଧ୍ୟବାଧକତା ତା ପାଖରେ ଆସି ପହଞ୍ଚିଛି । ଶୁଭଦାର ସରଳତା ତଥା ସହଜରେ ବିଶ୍ୱାସ କରିଯିବାର ଗୁଣ ସାଙ୍ଗରେ ଖେଳି ଦେଇଥିବା ବରୁନ୍ ଧିରେ ଧିରେ ତାର ଭୁଲକୁ ଚିହ୍ନିବା ଆରମ୍ଭ କରିସାରିଥିଲା । କେଉଁ ଏକ ନିଆରା ଆସକ୍ତି ଏବଂ ଆକର୍ଷଣ ତାକୁ ଶୁଭଦା ପାଖକୁ ବାରମ୍ବାର ଟାଣି ଆଣୁଥିଲା । ନିଜର ପରିବାର ଥାଉ ଥାଉ ଏପରି ଆକର୍ଷଣ ବେଇମାନ୍ ହୋଇପାରେ କିନ୍ତୁ ବରୁନ୍‌ର ପ୍ରତିକ୍ରୀୟା ସତରେ ଯେ ପ୍ରେମ ଥିଲା ନା ଅଭିନୟ ତାହା ସେ ହିଁ କେବଳ ଜାଣିଥିଲା କିନ୍ତୁ ସେ ଖୋଜୁଥିଲା ଶୁଭଦାକୁ ବାରମ୍ବାର । ତା' ଦେହର ଛାଇରେ ସେ

ଶୁଭଦାକୁ ହିଁ ଦେଖୁଥିଲା, ଭାବନାର ଘେର ଭିତରେ ଶୁଭଦାର ଉପସ୍ଥିତି ତାକୁ ଅଧିକ ଆଶ୍ୱସ୍ତ କରୁଥିଲା।   ତୃଷା ମେଣ୍ଟାଇବା ନିମନ୍ତେ ଆଞ୍ଜୁଳାଏ ଜଳ ମଧ୍ୟ ବିଷ ପରି ଦୃଶ୍ୟ ହେଉଥିଲା ତାକୁ ଆଉ ସେ ଶୁଭଦାର ତୃଷାରେ ଆତୁର ଥିଲା।

ହଠାତ୍ ଡାକବାଲାର ଡାକରେ ସେ ପ୍ରକୃତିସ୍ଥ ହେଲା।  ଚିଠି ଦେଇ ଡାକବାଲା ଫେରିଗଲା । ଅନେକ ଚିଠି–ଭିତରୁ ଗୋଟିଏ ଲଫାପା ଉପରେ ପ୍ରେରକ ସ୍ଥାନରେ ଲେଖାଥିଲା – "ଅଭିଶପ୍ତା"। ସଙ୍ଗେ ସଙ୍ଗେ ସେହି ଲଫାପାଟିକୁ ଖୋଲିଦେଲା ବରୁନ୍। ସତେ ଅବା ସେହି ଚିଠିର ସ୍ପର୍ଶରେ ସେ କିଛି ଅନୁଭବ କରିସାରିଥିଲା। ଅଜାଣତରେ ଚିଠିକୁ ଛାତିରେ ଲଗାଇ ଚୁମାଟିଏ ଆଙ୍କିଦେଲା ଲଫାପା ଉପରେ । ଏମିତି କିଛି କିଛି ଚିଠିଥାଏ ଯାହାକୁ ହାତରେ ନେବା କ୍ଷଣି ଦେହ ଭିତରେ ଖେଳିଯାଏ ଗୋଟିଏ ଭିନ୍ନ ଉନ୍ମାଦନା। ଆଉ ସେହି ଉନ୍ମାଦନାର ଶିହରଣରେ ଯେତେବେଳେ ବରୁନ୍ ଚିଠିଟି ଖୋଲି ତା'ଉପରେ ଆଖି ବୁଲାଇ ଆଣିଲା ତା' ଭିତରେ ଏକ ଅଜଣା ଆଶଙ୍କା ତାକୁ ସତେ ଅବା ନିସ୍ତେଜ କରିଦେଲା ତାର ଅଗୋଚରରେ। ସମ୍ବୋଧନ ସ୍ଥାନରେ ଆଉ ସେହି ପୂର୍ବର ଆତ୍ମୀୟତାର ଭାବ ଝଲକୁ ନ ଥିଲା। ବରୁନ୍‌ର ଛାତି ଭିତରେ ହାତୁଡ଼ି ପିଟାର ଯନ୍ତ୍ରଣା। ସମ୍ବୋଧନର ଶୂନ୍ୟସ୍ଥାନ ତା' ହୃଦୟରେ ସଞ୍ଚରୁ ଥିଲା ନୂଆ ଏକ ଆଶଙ୍କା। ଧମ୍ କିନା ବସି ପଡି କମ୍ପିତ ହାତରେ ଚିଠିଟି ପଢ଼ିବା ଆରମ୍ଭ କଲା।

"......"

ତୁମକୁ ଯାହା ଯାହା ସମ୍ବୋଧନ କରୁଥିଲି ସେଇ ସମ୍ବୋଧନ କରିବାର ଅଧିକାର ମୋର ଆଉ ନାହିଁ। ତେଣୁ ସେଇ ସ୍ଥାନ ଶୂନ୍ୟ ରଖିଦେଲି। ମୁଁ ଏବେ ବିଶ୍ୱାସ କରି ପାରୁନି, ତୁମେ ମୋତେ ପ୍ରେମର ନିବେଦନ କରି ଅନ୍ୟ କାହାକୁ ସ୍ତ୍ରୀ ଭାବରେ ଗ୍ରହଣ କରିସାରିଛ। ମନେ ହେଉଛି ମୁଁ ଗୋଟିଏ ଦୁଃସ୍ୱପ୍ନ ଦେଖୁଛି। ସେଇ ସ୍ୱପ୍ନ ଭାଂଗିଗଲେ ତୁମେ ପୁଣି ପହଞ୍ଚିଯିବ ମୋ ପାଖରେ ତୁମର ସେ ଭୁବନ ଜିଣା ହସରେ ମୋ ଭିତରର ଦୁଃଖ, ଅବସାଦ ସବୁ ପୋଛି ଦେବ ପଲକ ମାତ୍ରକେ। ସାଉଁଟି ନେବ ମୋତେ ତୁମ ଦୁଇ ହାତର

ବନ୍ଧନୀ ଭିତରକୁ। ଗତ ଦୁଇବର୍ଷର ସଂପର୍କ ମଧ୍ୟରେ ମୁଁ କେବେ ଭାବି ନାହିଁ ତୁମେ ମୋଠାରୁ ଭିନ୍ନ ବୋଲି। ତୁମ ସତ୍ତାର ଏକ ଅବିଚ୍ଛେଦ୍ୟ ଅଂଶ ବୋଲି ନିଜକୁ ମଣିଛି ମୁଁ। ତେଣୁ ପ୍ରତି ମୁହୂର୍ତ୍ତରେ ତୁମରି ସାନ୍ନିଧ କାମନା କରିଛି। ତୁମ ସହିତ ଏକାତ୍ମ ହୋଇଯିବାର ପ୍ରତ୍ୟୟ ମୋ ଭିତରେ ସେମିତି ସୁଦୃଢ଼ ହୋଇଛି ଯେ ସାମାଜିକ ନୀତି, ନିୟମ, ଶୃଙ୍ଖଳା, ସବୁ ତୁଚ୍ଛ ହୋଇଯାଇଛି ମୋ ପାଖରେ। ବ୍ରାହ୍ମଣର ମନ୍ତ୍ରପାଠ, ହୋମ, ହାତଗଣ୍ଠି କିଛି ନ ହୋଇଥିଲେ ବି ମୁଁ ତ ତୁମର ପରିଣିତା ହୋଇସାରିଛି ମନେ ମନେ । ସିନ୍ଥିରେ ସିନ୍ଦୂର ନାଇ ନାହିଁ, କିନ୍ତୁ ସଧବାର ସମସ୍ତ ଆଚରଣ ପାଳିଛି। ତୁମକୁ ମୁଁ ସ୍ୱାମୀ ରୂପେ ଗ୍ରହଣ କରିସାରିଥିଲେ ହେଁ ମୋ ସଂସ୍କାର ମୋତେ ବାରମ୍ବାର ଚେତାଇ ଦେଉଥିଲା ତେଣୁ ବେଳେ ବେଳେ ତୁମ ପାଗଳାମିକୁ ଆକଟ କରିଛି। ଦିନେ ସେହିପରି ପାଗଳାମିରେ ମୋ ଗଳାରେ ମଙ୍ଗଳସୂତ୍ରଟିଏ ଦେବା ପାଇଁ ତୁମେ କେତେ ଯେ ଚେଷ୍ଟା କରିଥିଲ। କିନ୍ତୁ ମୁଁ ଚାହୁଁଥିଲେ ବି ତାକୁ ସ୍ୱୀକାର କରିପାରି ନଥିଲି। କାରଣ ବାପା-ମାଆଙ୍କ ବିନା ଆଶୀର୍ବାଦ ଏବଂ ସମାଜର ବିନା ସ୍ୱୀକୃତିରେ ମୁଁ ଏତେ ବଡ଼ ଲୋକ ଦେଖାଣିଆ ଭାରଟିଏ ସମ୍ଭାଳିବାର ସାହାସ ଜୁଟାଇପାରିନଥାନ୍ତି। ତୁମର ମୋର ସଂପର୍କକୁ ବାପା-ମାଆ ସ୍ୱୀକୃତି ଦେଇ ସାରିଥିଲେ। ଆଉ ସେହି ସ୍ୱୀକୃତି ବଳରେ ମୁଁ ହାତବଢ଼ାଇଥିଲି ନିଃଦ୍ୱନ୍ଦ୍ୱରେ ତୁମ ଆଡ଼କୁ। କିନ୍ତୁ ତା'ର କିଛିଦିନ ପରେ ବାପା କ'ଣ ଜାଣିଲେ କେଜାଣି ତୁମଠୁ ମୋତେ ଦୂରେଇ ରହିବାକୁ କହିଥିଲେ। କିନ୍ତୁ ସେ ଦିନ ବାପାଙ୍କର ମନା କରିବାର କାରଣ ବୁଝିପାରିନଥିଲି କି ବୁଝିବାକୁ ଚେଷ୍ଟା ବି କରିନଥିଲି। ବେଳେ ବେଳେ ତୁମର ପାଗଳାମି ଦେଖି ମୋତେ ଅଡୁଆ ଲାଗୁଥାଏ ଏବଂ ତୁମକୁ ଆକଟ କରେ ସେସବୁ ନକରିବା ପାଇଁ କାରଣ ଆମ ସମାଜ ଆଉ ସଂସ୍କୃତିରେ ବିବାହ ପୂର୍ବରୁ ସେସବୁ ଆଚରଣ ସ୍ୱୀକାର୍ଯ୍ୟ ନୁହେଁ। ତୁମେ କିନ୍ତୁ ଖୁବ୍ ବେଖାତିର୍ ଥିଲ ତୁମର ଆଚରଣକୁ ନେଇ। ତୁମର ଭଲ ପାଇବା ମୋ ପାଇଁ ଅନେକ ଗର୍ବ ଓ ଗୌରବର ବିଷୟ ଥିଲା। ତୁମ ସହିତ ମୋର ସଂପର୍କକୁ ମୁଁ ସାରା ଦୁନିଆକୁ ଜଣାଇ ଦେଉଥିଲି। ଜଣେ ବୁଦ୍ଧିମାନ ପ୍ରେମିକ ଭାବରେ ମୋ ସ୍ୱପ୍ନକୁ ପୂରଣ କରିବାର ଲାଳସା ମୋତେ ବାରମ୍ବାର ଦେଖାଉଥିଲ। ମୋ ସ୍ୱପ୍ନକୁ ସାର୍ଥକ କରିବାର ପ୍ରଚେଷ୍ଟାରେ ତୁମେ ଯେ ନିଃସର୍ତ୍ତରେ ସାମିଲ୍

ହେବ ସେଭଳି ଆଶ୍ୱାସନା ମୋତେ ଦେଇ ସାରିଥିଲ । ଦିନେ କଥା ଛଳରେ କହିଥିଲ, ‘ଶୁଭଦା ମୁଁ ସଂକଳ୍ପ ବଦ୍ଧ ଯେ, ତୁମକୁ ସେହି ଉଚ୍ଚ ସ୍ଥାନରେ ନେଇ ପହଞ୍ଚାଇବି। ଯାହାର ସ୍ୱପ୍ନ ତୁମେ ଅହରହ ଦେଖୁଛ। ଯଦି ତୁମର ସ୍ୱପ୍ନକୁ ମୁଁ ସାର୍ଥକ କରିନପାରେ ତେବେ ତୁମର ସ୍ୱାମୀ ହେବାର ଯୋଗ୍ୟତା ମୋ ପାଖରେ ନାହିଁ।’ ତୁମର ଏହି କଥା ପଦକ ମୋ ଭିତରେ ପୁନଶ୍ଚ ରକ୍ତ-ସଞ୍ଚାରଣ କଲା ଏବଂ ମୋ ପ୍ରତିଭାର ଶକ୍ତି ବଢ଼ିବାରେ ଲାଗିଲା। କିନ୍ତୁ ମୋ ଭିତରେ ସଞ୍ଚରିତ ସରସ୍ୱତୀଙ୍କର ଏହି ବରଦାନଟିକୁ ଏପରି ହଜାଇ ଦେବି ବୋଲି କେବେ ଭାବି ନଥିଲି ।

ପିଲାଟି ଦିନରୁ ଗୀତ ଶୁଣୁଥିଲି ଆଉ ବୋଲୁଥିଲି ମଧ୍ୟ। ଏହି ସଂଗୀତକୁ ନେଇ ଦିନେ ମୁଁ ପ୍ରସିଦ୍ଧି ପାଇବି ଅବଶ୍ୟ ଏହି ସ୍ୱପ୍ନ ମୁଁ କେତେଥର ଦେଖିଥିଲି। କିନ୍ତୁ ନିଜକୁ ଆଘାତ କରି ନୁହେଁ ସ୍ନେହ, ମମତା, ପ୍ରେମ ଆଉ ନିଃସର୍ତ୍ତ ସହଯୋଗରେ । ଯେତେବେଳେ ଶୁଣୁଥିଲି ମୁଁ ଖୁବ୍ ଭଲ ଗୀତ ଗାଏ; ମୋ ଛାତି କୁଣ୍ଢେମୋଟ ହେଇଯାଉଥିଲା। ସାଙ୍ଗମାନଙ୍କଠାରୁ ଯେତେବେଳେ ଶୁଣୁଥିଲି ମୋର ସଙ୍ଗୀତ ଦିନେ ମୋ ଭାବି ସ୍ୱାମୀର ଅଭିମାନକୁ ଅତି ସହଜରେ କ୍ଷୁର୍ଣ୍ଣ କରିଦେବ ସେତେବେଳେ ଏକ ଭିନ୍ନ ଶିହରଣରେ ମୁଁ ଉନ୍ମାଦିତ ହେଉଥିଲି । କେହି କେହି ତ ଥଟ୍ଟାରେ କହୁଥିଲେ ମୋ ପିଲାମାନଙ୍କୁ ଲୋରି ଗାଇ ସହଜରେ ଶୁଆଇ ଦେବାରେ ମୁଁ ସମର୍ଥ ହେବି। ସେତେବେଳେ ମାଆ ସରସ୍ୱତୀଙ୍କ ନିକଟରେ ମୁଁ କୃତଜ୍ଞତା ଜ୍ଞାପନ କରିଥିଲି ଏପରି ଏକ କଣ୍ଠ ପ୍ରଦାନ କରିଥିବାରୁ। ଯାହାକି ମୋ ଜୀବନର ବହୁ କାର୍ଯ୍ୟକଳାପକୁ ସରଳ ଏବଂ ସହଜ କରିବାରେ ସାହାଯ୍ୟ କରିଥିଲା । କିନ୍ତୁ ଜୀବନର ଭିନ୍ନ ଏକ ମୋଡରେ ଆଜି ଯେତେବେଳେ ମୁଁ ଏକ ଅନିଶ୍ଚିତ ଭବିଷ୍ୟତ ନେଇ ଠିଆ ହୋଇଛି ସେତେବେଳେ ଭାବୁଛି ଏହା ମୋ ପାଇଁ ଆଶୀର୍ବାଦ ନଥିଲା ଓଲଟି ମୋ ପାଇଁ ଅଭିଶାପର କାରଣ ହେଲା। ତୁମେ ମୋର ଗୀତ ଗାଇବାର ସ୍ୱପ୍ନକୁ ପୁରଣ କରିବାରେ ସହଯୋଗ କରିବା ବାହାନାରେ ମୋର ନିକଟବର୍ତ୍ତୀ ହେବାରେ ସଫଳ ହେଲ । ମିଠା ମିଠା କଥା କହି ମୋ ମନରେ ବିଶ୍ୱାସ ଜନ୍ମାଇଲ । ମୋ ବାପା ମାଆଙ୍କ ମନରେ ମୋତେ ନେଇ କେତେ ସ୍ୱପ୍ନ

ଦେଖାଇଲ। ମୁଁ ଟିକେ ବି ଜାଣି ପାରିଲିନାହିଁ ଯେ ତୁମର ମୋତେ ନେଇ ମନ୍ଦ ଉଦ୍ଦେଶ୍ୟ ରହିଛି। ଜାଣିଲା ବେଳକୁ ମୁଁ ତୁମର ହୋଇସାରିଥିଲି । ତୁମେ କିନ୍ତୁ ପ୍ରେମିକ ଆଉ ସ୍ୱାମୀର ଶବ୍ଦକୁ କଳଙ୍କିତ କରିଛ ଥରେ ନୁହେଁ ବାରମ୍ବାର। ମୋ ଭାବନା ସହିତ ଖେଳିଛ । ମୋ ସହିତ ବିଶ୍ୱାସଘାତକତା କରିଛ। ତୁମ ସ୍ତ୍ରୀ ସହିତ ବିଶ୍ୱାସଘାତକତା କରିଛ। ପ୍ରେମ ସହିତ ବିଶ୍ୱାସଘାତକତା କରିଛ । ଏହା ପରେ ବି ତୁମ ଉପରେ ମୁଁ ରାଗି ପାରୁନାହିଁ କାରଣ କ'ଣ ଜାଣିଛ ଆଗାମୀ ଦିନରେ ଆଉ କେଉଁ ମଣିଷକୁ ସହଜ ଭାବରେ ବିଶ୍ୱାସ ନକରିବା ପାଇଁ ମୋତେ ତୁମେ ଚେତାଇ ଦେଇଥିବାରୁ, ଆଉ ପ୍ରେମ ଭଳି ଏକ ପବିତ୍ର ସୁନ୍ଦର ଅନୁଭବଟିଏ ଦେଇଥିବାରୁ। ତୁମେ କେତେ ସହଜରେ ପ୍ରତାରିତ କରିଗଲ ତେବେ ମୁଁ ତ ପୁଣି ତୁମକୁ ଭଲ ପାଇଛି ସତ୍ୟ ଏବଂ ପବିତ୍ର ମନରେ, ହୃଦୟରେ । ପ୍ରେମକୁ ସମ୍ମାନ ଦେବା ମୋର ଧର୍ମ ବୋଲି ମୁଁ ଜାଣେ।

ସେଦିନ କେତେ ସୁନ୍ଦର ଭାବରେ ମୋ ବିବାହ ପ୍ରସ୍ତାବଟିକୁ ଏଡ଼ାଇ ଦେଇଥିଲ। ଆଉ ମୁଁ ଏଡ଼େ ବୋକିଟେ ଥିଲି ଯେ ବୁଝି ନ ପାରି ତୁମକୁ ସ୍ୱାମୀ ରୂପରେ ପାଇବାକୁ ନେଇ ଗର୍ବ କରୁଥିଲି। ସେଦିନ ମୁଁ ଖୁବ୍ ଖୁସି ଥିଲି ଯେ ଯାହାକୁ ସ୍ୱାମୀ ରୂପରେ ପାଇବି ସେ ମୋର ପ୍ରତିଟି ଭାବନାକୁ ସମ୍ମାନ ଦେଉଛି। ମୋ ସ୍ୱପ୍ନ ସହ ତୁମ ସ୍ୱପ୍ନର ସାନ୍ନିଧ୍ୟ ଏକାତ୍ମ ହେବାରେ ମୁଁ ଆଉ ସେହି ଲୋକ ଦେଖାଣିଆ ବିବାହକୁ ଏଡ଼ାଇ ଦେଇ ନିଜ କର୍ମରେ ନିଷ୍ଠା ପ୍ରତିଷ୍ଠା କଲି। ସମାଜରେ ତୁମର ଏକ ମର୍ଯ୍ୟାଦାବନ୍ତ ସ୍ଥାନକୁ ଦେଖି ମୁଁ ସଂକଳ୍ପବଦ୍ଧ ହୋଇପଡ଼ିଲି ତୁମ ସ୍ତରକୁ ଉପନୀତ ହେବାକୁ। କାରଣ ମୋର ବିଶ୍ୱାସ ଥିଲା, ତୁମେ କେବଳ ମୋର-ଆଉ କାହାର ଏତେ ଟିକିଏ ମଧ ଅଧିକାର ନାହିଁ ତୁମ ଉପରେ। କିନ୍ତୁ ଆଜି ଯେତେବେଳେ ତୁମ ଅସ୍ତିତ୍ୱଟି ଜାଣିବାକୁ ପାଇଲି ନିଜକୁ ଜଣେ ଅପରାଧି ମନେ କରୁଛି। ନାରୀ ହୋଇ ଆଉ ଜଣେ ନାରୀର ଅଧିକାରକୁ ଛିନ୍ନ କରିବା ମୋର କି ଅଧିକାର ଅଛି ? ତୁମ ସ୍ତ୍ରୀଙ୍କ ସହ ବହୁବାର କଥା ହୋଇଛି। ସେ ମୋତେ କେଉଁ ଦୃଷ୍ଟିରେ ଦେଖନ୍ତି ମୁଁ ତାହା ଜାଣେନା। କିନ୍ତୁ ତୁମର ମୋର ସଂପର୍କ ବିଷୟରେ ସେ ସବୁକିଛି ଜାଣନ୍ତି।

ତୁମର ହୁଏତ ସବୁକଥା ମନେ ନ ଥିବ। ସେଇଥିପାଇଁ ମୁଁ ମନେ ପକାଇଦେଉଛି ଆମ ସମ୍ପର୍କର ପ୍ରଥମ ଦିନର କଥା। ଆତ୍ମ ସମୀକ୍ଷା କରୁଛି ମୋର ଭୁଲ କେଉଁଠି ରହିଲା ? କାହିଁକି ଏତେ ବଡ଼ ଶାସ୍ତି ମୋତେ ଦେଲ ? ସେମିତି କୌଣସି ଆକର୍ଷଣ ପ୍ରଥମ ଦେଖାରେ ଅନୁଭବ କରି ନଥିଲି ତୁମ ପ୍ରତି। ଅନ୍ୟାନ୍ୟ ସାଧାରଣ ମଣିଷଙ୍କ ଭଳି ତୁମେ ବି ସାଧାରଣ ଥିଲ ମୋ ପାଖରେ। କିନ୍ତୁ ସେ ଦିନର ପ୍ରଥମ ଦେଖାରୁ ହିଁ ତୁମେ ମୋ ପ୍ରତି ଆକର୍ଷିତ ହୋଇସାରିଥିଲ ଏବଂ ମୋତେ ଦେଖା କରିବାର ଅନେକ ବାହାନା କରି ବାରମ୍ବାର ଭେଟିବାକୁ ଚେଷ୍ଟା କରୁଥିଲ। ଏପରି ଥରେ ବାହାନା କରି ଆମ ଘରକୁ ଆସିଥିବାବେଳେ ପରୋକ୍ଷରେ ମୁଁ ତୁମକୁ ବାରଣ କରିଥିଲି। ମୋ ବାରଣରେ ତୁମର ଆସିବା ବନ୍ଦ ହୋଇନଥିଲା । ତୁମେ ବାରମ୍ବାର ସେହି ନିୟମିତ ସମୟରେ ଆସି ପହଞ୍ଚିଯାଉଥିଲ । ଅଯଥାରେ ତୁମର ଏପରି ଆସିବା ମୋତେ ବିବ୍ରତ କରୁଥିଲା । ଦିନେ ସୁଯୋଗ ଦେଖି ତୁମ ହାତ ଲେଖା ଚିଠିଗୋଟେ ବଢ଼ାଇ ଦେଇଥିଲ ମୋ ଆଡେ । ଭାବିଥିଲି ତୁମର ଏ ଚିଠି ମୋ ବାପା ମାଆଙ୍କୁ ଦେଖାଇ ଆଚ୍ଛାକରି ପାନେ ଦେବି। କିନ୍ତୁ ମୁଁ ତାହା କରିପାରିଲି ନାହିଁ। କାରଣ ସେତେବେଳକୁ ତୁମେ ଆମ ପରିବାରର ଜଣେ ସଦସ୍ୟ ହୋଇ ସମସ୍ତଙ୍କୁ ନିଜର କରିସାରିଥିଲ। କିନ୍ତୁ ବିଶ୍ୱାସକର ବରୁନ୍ ଆଜି ମୁଁ ପଶ୍ଚାତାପ କରୁଛି ହୁଏତ ମୁଁ ସେମିତି କରିଥିଲେ ଆଜି ଏହି ଅଭିଶାପ ଅଶ୍ରୁର ଭଉଁରୀରେ ଉବୁଟୁବୁ ହୋଇ ନ ଥାନ୍ତି।

ଏମିତି କିଛି ଅସାଧାରଣ ଝିଅ ମୁଁ ନୁହେଁ। ସାଧାରଣ ଚେହେରା ଓ ଗୁଣର ଅତି ସାଧାରଣ ମଧ୍ୟବିତ୍ତ ପରିବାରର ଝିଅଟିଏ ଥିଲି। କିନ୍ତୁ ତୁମେ ମୋତେ ପାଇବାକୁ ରୀତିମତ ସାଧନା କରିବା ଆରମ୍ଭ କରିଦେଇଥିଲ। ହଁ, ମୋ ବାପା ଓ ଭାଇମାନେ ଭଲ ଚାକିରୀ କରୁଥିଲେ। ସମସ୍ତଙ୍କର ଖୁବ୍ ଆଦରର ପାତ୍ରୀ ଥିଲି। ମୋର ସମସ୍ତ ଇଚ୍ଛା, ଖୁସି ପୂରଣ କରିବା ପାଇଁ ମୋ ପରିବାର ତତ୍ପର ଥିଲେ। ଯାହା ଚାହୁଁଥିଲି, ତାହା ଅତି ସହଜରେ ପାଉଥିଲି। ମୋ ଭିତରେ ତୁମେ କ'ଣ ଦେଖିଥିଲ କେଜାଣି ମୋତେ ପାଇବା ପାଇଁ ଆକାଂକ୍ଷିତ ହୋଇଥିଲ, ବ୍ୟଗ୍ର ହୋଇ ପଡ଼ିଥିଲ। ତୁମ ପାଇଁ ମୁଁ ଅତ୍ୟନ୍ତ ଦୁର୍ଲଭ ଥିଲି

ଆକାଶର ତାରା ଭଳି। ତୁମେ ! ନିଜକୁ ବାମନ ବୋଲି ବାରମ୍ବାର କହୁଥିଲ। କେମିତି କୋଉ ସୂତ୍ରରୁ ମୋର ରୁଚି, ମୋର ପସନ୍ଦ ଅପସନ୍ଦର ଖବର ସଂଗ୍ରହ କରି ସେଇଭଳି ହେବା ପାଇଁ ଅପ୍ରାଣ ଉଦ୍ୟମ କରୁଥିଲ। ଯେମିତି ମୋ ପସନ୍ଦର କଥାମାନ କହୁଥିଲ, ମୋ ପସନ୍ଦର ସିନେମା ଦେଖୁଥିଲ, ମୋର ପ୍ରିୟ ଗାୟକ ଗାୟିକାଙ୍କର କ୍ୟାସେଟ କିଣୁଥିଲ। ମୋ ପସନ୍ଦର ଲେଖକ ଲେଖିକାଙ୍କର ବହି କିଣି ପଢ଼ିବା ଆରମ୍ଭ କଲ। କେତେ ବେଳେ କେମିତି କୌଶଳ କରି ମୋ ପସନ୍ଦର ବହିସବୁକୁ ମୋ ପାଖକୁ ପଠାଉଥିଲ।

ବରୁନ୍, ମୁଁ ତ ଦେବୀ କି ମହାମାନବୀ ନଥିଲି। ଖୋସାମତରେ କୁଆଡ଼େ ଭଗବାନ ବି ଟଳନ୍ତି, ମୋ ପରି ରକ୍ତ ମାଂସରେ ଗଢ଼ା ସାଧାରଣ ଝିଅଟିଏ କେତେ ଦିନ ଦମ୍ଭ ଧରି ଥାଆନ୍ତା ! ଆସ୍ତେ ଆସ୍ତେ ମୁଁ ବି ତୁମ ପ୍ରତି ଆକୃଷ୍ଟ ହେଉଥିଲି ମୋ ଅଜାଣତରେ ସେହି ସମୟରେ ତୁମେ ହଠାତ୍ ମୋର ଦୃଷ୍ଟି ଗୋଚର ହେଲ ନାହିଁ। ତୁମେ ଦୀର୍ଘ ସତେଇଶ ଦିନ ଏକ ଜରୁରୀ କାମରେ ଦିଲ୍ଲୀ ଚାଲିଯାଇଥିଲ। ଏତେ ଦିନ ତୁମକୁ ନ ଦେଖି ମୁଁ ବ୍ୟାକୁଳ ହୋଇ ପଡ଼ିଲି। ତୁମ ସହ ଏତେ ଦିନର ପରିଚୟ ଭିତରେ ମୁଁ କେବେ ବି ଆକଳନ କରିପାରିନଥିଲି ଯେ ତୁମର ଅନୁପସ୍ଥିତି ମୋ ପାଇଁ ଏତେ ଯନ୍ତ୍ରଣାଦାୟକ ହେବ ବୋଲି। ମୁଁ ନିଶ୍ଚିତ ହୋଇଯାଇଥିଲି ମୋର ମଧ୍ୟ ହୃଦୟର କେଉଁ କୋଣରେ ତୁମକୁ ନେଇ ଦୁର୍ବଳତା ଦାନା ବାନ୍ଧି ସାରିଥିଲା। ଦିଲ୍ଲୀରୁ ଫେରିଲା ପରେ ତୁମେ ଅସୁସ୍ଥ ହୋଇପଡିଥିଲ। ଅସୁସ୍ଥ ଅବସ୍ଥାରେ ମଧ୍ୟ ତୁମେ ଅଫିସ୍‌କୁ ଯାଇଥିବା ଶୁଣି ମୁଁ କାଳବିଳମ୍ବ ନକରି ତୁମ ଅଫିସ୍‌ରେ ପହଞ୍ଚିଗଲି । ପହଞ୍ଚି ଦେଖିଲି ଚଉକିରେ ଆଉଜି ପଡି ତୁମେ ଶୋଇ ପଡିଛ। ଗୋଟିଏ କଥା ସତ କହିବି ବରୁନ୍ ସେଦିନ ଇଚ୍ଛା ହେଉଥିଲା ତୁମକୁ ଯୋରରେ ଜାବୁଡି ଧରିବା ପାଇଁ । କିନ୍ତୁ ସାହାସ ଯୁଟାଇପାରିଲିନାହିଁ। ତୁମ କପାଳରେ ହାତ ଥାପିଲି। ତୁମେ ତୁମର ଜ୍ୱରତପ୍ତ ହାତରେ ଚାପି ଧରିଲ ମୋର ହାତ। ମୋ ପାପୁଲିରେ ତୁମ ଓଠର ଉଷ୍ମତା ମୁଁ ଅନୁଭବ କଲି । ମୋର ସମଗ୍ର ସତ୍ତା ତୁମର ଉଷ୍ମ ସ୍ପର୍ଶରେ ଶିହରି ଉଠିଲା। ଭୟରେ ହାତ ଛଡ଼ାଇ ନେଇ ସୋଫାରେ ବସିଲି। ମୋ ମନ କିନ୍ତୁ ମୋ ଆୟତ୍ତରେ ନ ଥିଲା । ଦିନ ଭିତରେ ତୁମକୁ ଥରଟିଏ ନ

ଦେଖିଲା ଯାଏ ମୋତେ ଶାନ୍ତି ମିଳୁ ନଥିଲା । ଏଣୁ ଆମ ସାକ୍ଷାତ ଧିରେ ଧିରେ ବଢ଼ିବାକୁ ଲାଗିଲା । ବେଳେବେଳେ ମୁଁ ତୁମ ଉପରେ ବିରକ୍ତ ମଧ୍ୟ ହେଉଥିଲି ଏପରି ବାରମ୍ବାର ଦେଖା କରିବାକୁ। କାରଣ ଆମ ସମାଜ ଏହାକୁ ପସନ୍ଦ କରେନି। ଏପରି କହି ବହୁବାର ତୁମକୁ ମୋଠାରୁ ଦୂରେଇବାକୁ ଚାହିଁଥିଲି। ତୁମେ କିନ୍ତୁ କୌଶଳ କରି ମୋ ମନ ପସନ୍ଦର ରାଜକୁମାର ବିଷୟରେ ସବୁ ଖବର ସଂଗ୍ରହ କରିନେଇ ମୋ ସାମ୍ନାରେ ନିଜକୁ ସେଇ ରୂପରେ ଉପସ୍ଥାପନ କରୁଥିଲ। ମୁଁ ଯାହା ଏବଂ ଯେପରି ମୋ ମନର ପୁରୁଷଠାରୁ ଚାହୁଁଥିଲି ଠିକ୍ ସେସବୁ ତୁମ ଭିତରେ ପାଇଯିବାରୁ ତୁମକୁ ଅକ୍ଲାନ୍ତରେ ସ୍ୱୀକାର କରିନେବାକୁ ମୋ ମନରେ କୌଣସି ଦ୍ୱିଧା ରହିଲାନାହିଁ ।

ସମାଜର ରୀତିନୀତିକୁ ସମ୍ମାନ ଦେବାକୁ ଯାଇ ମୁଁ କେତେବେଳେ କେମିତି ତୁମର ବହୁ କଥାରେ ଆକଟ କରୁଥିଲି। ଏପରି ଆକଟକୁ ତୁମେ ମଧ୍ୟ ସେ ସମୟରେ ପ୍ରତିବାଦ କରୁଥିଲ । ଆମ ସଂପର୍କରେ କୁତ୍ସାରଟନା ନହେଉ ଯେମିତି ତା'ପ୍ରତି ମୁଁ ଖୁବ୍ ସଜାଗ ଥିଲି। ଅନ୍ୟପଟେ ତୁମ ପାଇଁ ମୁଁ ଏତେ ବ୍ୟାକୁଳ ଥିଲି ଯେ ଯାହା ହେଲେ ବି ତୁମର ପତ୍ନୀ ହେବାରେ ମୋର ଆପତ୍ତି ନ ଥିଲା। ଧିରେ ଧିରେ ତୁମ ପତ୍ନୀ ହେବାର ସୁଖ ଅନୁଭବ କଲି। ଦାମ୍ପତ୍ୟ ଜୀବନର କୌଣସି ଅନୁଭୂତି ନଥାଇ ମୁଁ କିନ୍ତୁ କଳ୍ପନାରେ ସେହି ସଂପର୍କର ସୁଖକୁ ଅନୁଭବ କରିସାରିଥିଲି। ସେଦିନର ଜ୍ୱରତପ୍ତ ଓଠକୁ ମୋ ହାତ ପାପୁଲିରେ ଥୋଇ ଦେବା ଏବଂ ସମଗ୍ର ଶରୀରରେ ଗୋଟାଏ ରୋମାଞ୍ଚ ଖେଳିଯିବା ଅନୁଭୂତି ହିଁ ଥିଲା ମୋ ଦାମ୍ପତ୍ୟ ସୁଖର ପ୍ରଥମ ଅନୁଭୂତି। ତୁମକୁ ଯେତେବେଳେ ବି ତା' ପରେ ସ୍ୱାମୀ ରୂପରେ ଭାବିଛି ସେହି ଅନୁଭୂତି ହିଁ ବାରମ୍ବାର ଆମର ସଂପର୍କକୁ ସ୍ମରଣ କରାଇ ଦେବାରେ ମୋତେ ସାହାଯ୍ୟ କରିଛି ।

ଟୁର୍‌ରେ ଯିବାର ଥିଲେ ପୂର୍ବରୁ ମୋତେ କହିଥାଅ। ତୁମର ଦିନକର ଅନୁପସ୍ଥିତି ମୋତେ ଯୁଗଟିଏ ପରି ମନେହୁଏ। ତୁମ ସହିତ ମୋର ସମସ୍ତ ପ୍ରାଣଶକ୍ତି ମଧ୍ୟ ଚାଲି ଯାଇଥାଏ ଯେମିତି। ନିର୍ଜୀବ ମନେ ହୁଏ ନିଜକୁ। ତୁମକୁ ଦେଖିଲେ ମୋ ଦେହରେ ଜୀବନ ପଶେ। ତୁମେ କୁହ, ତୁମର ବଡ଼

ପରିବାର। ସେଠି ଯଦି ମୁଁ ବଡ଼ ବୋହୂ ହୁଏ, ଅନେକ ଜଞ୍ଜାଳ ମୁଣ୍ଡେଇବାକୁ ପଡ଼ିବ। ରାତି ପାହାନ୍ତାରୁ ଉଠି ଗାଧୋଇ ପାଧୋଇ ରୋଷେଇ ଘରେ ପଶିବାକୁ ହେବ। ସମସ୍ତଙ୍କର ଖବର ଅନ୍ତର ବୁଝି ତୁମ ପାଖକୁ ଆସିବାକୁ ହୁଏତ ସମୟ ପାଇବିନି ମୁଁ। ତୁମେ କିନ୍ତୁ ମୋତେ ସବୁବେଳେ ପାଖରେ ପାଇବାକୁ ତତ୍ପର। ଏଣୁ ସଙ୍ଗେ ସଙ୍ଗେ କହି ଉଠିଥିଲ ବାହାଘର ପରେ ମୋତେ ଶୀଘ୍ର ଅନ୍ୟତ୍ର ନେଇଯିବ ବୋଲି। କିନ୍ତୁ ମୁଁ ମନାକରିଦେଇଥିଲି। ମୁଁ ଚାହୁଁଥିଲି ଶାଶୁ, ଶ୍ୱଶୁର, ନଣନ୍ଦ, ଦିଅର ସମସ୍ତଙ୍କ ଗହଣରେ ରହିବାକୁ। ସମସ୍ତଙ୍କର ସ୍ନେହ, ମମତାର ପାତ୍ରୀଟିଏ ହେବାକୁ ଏବଂ ସମସ୍ତଙ୍କୁ ଏକାବେଳକେ ନିଜର କରିନେବାକୁ। ବଡ଼ ବୋହୂର ବେଶୀ ଦାୟିତ୍ୱ କହି ତୁମେ ମୋତେ ବେଳେ ବେଳେ ଭୟ ଦେଖାଉଥିଲ ତୁମ କଥା ଶୁଣି ମୁଁ ଦମ୍ଭର ସହିତ କହୁଥିଲି, "ତୁମ ପାଇଁ ମୁଁ ସବୁ କରିପାରିବି। ଦରକାର ପଡ଼ିଲେ ନିଆଁରେ ମଧ୍ୟ ପଶିଯିବି। ତୁମେ ଖାଲି ମୋତେ ଟିକେ ଭଲ ପାଉଥିବ। ତୁମ ସ୍ନେହ, ମମତା ଟିକକ ପାଇ ମୁଁ ସ୍ୱର୍ଗ ସୁଖ ଅନୁଭବ କରିବି।"

ମୁଁ ଯେମିତି ସ୍ୱପ୍ନରେ ବଞ୍ଚୁଥିଲି ସେଇସବୁ ଦିନ। ତୁମର ପତ୍ନୀ ହେବା ପରେ କ'ଣ କ'ଣ କରିବି ସେଇ ସବୁ କଳ୍ପନା କରୁଥିଲି। ମୋର ସୁଖୀ ଦାମ୍ପତ୍ୟ ଜୀବନର ସ୍ୱପ୍ନ ମୋତେ ଆନନ୍ଦରେ ବିଭୋର କରୁଥିଲା। ଶିହରଣର ଢେଉରେ ଅନବରତ ପ୍ଲାବିତ କରୁଥିଲା। ସ୍ୱପ୍ନରେ ତୁମ କନ୍ୟା ସନ୍ତାନଟିର ଜନନୀ ହେବାର ମଧ୍ୟ ସୁଖ ଅନୁଭବ କରୁଛି। ସତେ ଅବା ନଅ ମାସର ଗର୍ଭ ବ୍ୟଥାରେ ବ୍ୟଥିତ ହୋଇ କନ୍ୟା ସନ୍ତାନଟିକୁ ଜନ୍ମ ଦେଇଛି। କଳ୍ପନାରେ ଜୀବନର ପୂର୍ଣ୍ଣତାକୁ ନେଇ ଆଜି ମୋତେ ବାକି ଜୀବନ ବଞ୍ଚିବାକୁ ପଡୁଛି ।

ଜାଣିରଖ, ଦୁଃଖରେ ନୁହେଁ ଖୁବ୍ ଆନନ୍ଦରେ ବଞ୍ଚୁଛି ମୁଁ ଏବେ ତୁମ ପ୍ରତାରଣାର ପୂର୍ଣ୍ଣ ଜୀବନ। ଜାଣିଛ'ନା ଝିଅର ନାମକରଣ ଉତ୍ସବରେ ତା' ନାଁ ରଖିଲି 'ବରଖା'। ତୁମେ କହିଥିଲ ନା, ଆମ ଝିଅ ନାଁ ବରଖା ଦେବାକୁ। ପିଲାର ନାମକରଣରେ କେତେ ଭୋଜିଭାତ ହୁଏ, ପୂଜାପାଠ ହୁଏ। ଲୋକଙ୍କ ଭିଡ଼ ଜମେ। ସମସ୍ତେ ଆଶୀର୍ବାଦ କରନ୍ତି ନବଜାତ ଶିଶୁକୁ। ମୁଁ କିନ୍ତୁ ଏ ସବୁ କିଛି ଲୋଡ଼ିନି। ତୁମ ସହିତ ଏକାନ୍ତରେ ବସି ଝିଅକୁ ଆଦରରେ କୋଳେଇ

କାଖେଇ ନେଲି । ତା'ର ସେହି କୋମଳ ହାତ, ପାଦ ଏବଂ ମୁଖ ମଣ୍ଡଳର ସୌନ୍ଦର୍ଯ୍ୟ ମୋତେ ଟାଣି ଧରୁଥିଲା । ଏଥିରେ ଅବା ନୂଆ କଥା କ'ଣ ? ସବୁ ମାଆଙ୍କୁ ନିଜ ସନ୍ତାନ ପ୍ରିୟ ହୋଇଥାଏ, ସେ ଯାହା ହୋଇଥାଉନା କାହିଁକି । ଝିଅର ମୁହଁକୁ ଚାହିଁ ଯେତେ ଖୁସି ପାଏ ସେପରିବି ଖୁସି ହୋଇପାରେ ତୁମ କଥା ମନେ ପଡିଲେ । ସେଦିନ ତୁମେ ଖୁବ୍ ଖୁସିରେ ଥିଲ । ତୁମ ସହିତ ଦେଖା ହେବା ମାତ୍ରେ ମୋ ହାତକୁ ବଢ଼ାଇ ଦେଲ ଲମ୍ବା ଲଫାପାଟିଏ ତୁମ ଚାକିରୀର ପଦୋନ୍ନତୀ ପତ୍ର । ତୁମ ଖୁସିରେ ତୁମେ ମୋତେ କହିଥିଲ, ତୁମର 'କ'ଣ ଦରକାର ?' ଆଉ ମୁଁ କହିଥିଲି, "କେବଳ ତୁମର ବିଶ୍ୱାସ ଏବଂ ଭଲପାଇବା ।" ଏହା ଶୁଣି ତୁମେ ହସିଦେଇ ମୋତେ ଟାଣି ନେଇଥିଲ ଏକ ଶାଢ଼ୀ ଦୋକାନକୁ । ମନେ ପଡୁଛି ତୁମର; ଆମେ ଦୁହେଁ ସାଙ୍ଗ ହୋଇ ଶାଢ଼ୀ, ସାୟା, ବ୍ଲାଉଜ କିଣି ସାରିବା ପରେ ସେ ଦୋକାନୀଟି କହିଥିଲା– "ପୁଅ ପାଇଁ ସାର୍ଟ, ପ୍ୟାଣ୍ଟ ନେବାକୁ" । ଏହା ଶୁଣି ମୋ ଭିତର ଆନନ୍ଦରେ ଉଲ୍ଲସି ଉଠୁଥିଲା । ପାଦ ଆଉ ତଳେ ଲାଗୁ ନଥିଲା । ପବନରେ ପହଁରିଲା ପରି ଭାବାବେଶରେ ମୂହୁର୍ମୁହୁଃ ଆଚ୍ଛନ୍ନ ହୋଇ ପଡୁଥିଲି ।

ସେହି ଦିନ ହିଁ ଫେରିଲାବେଳେ ମୁଁ ତୁମକୁ କହିଥିଲି, "ଆଉ ଅପେକ୍ଷା କରିପାରିବିନି । ଏଥର ମୋତେ ସବୁଦିନ ପାଇଁ ପାଖକୁ ନେବାର ବ୍ୟବସ୍ଥା କର" । ତୁମେ କିନ୍ତୁ ମୋ ନାନୀମାନଙ୍କ ବିବାହର ବାହାନା କରି ଖୁବ୍ ସୁନ୍ଦର ଆଳଟିଏ ବାଛିନେଲ । ମୁଁ ମଧ୍ୟ ତୁମର ଏପରି ଭାବନାକୁ ଦେଖି ଖୁବ୍ ଖୁସି ହୋଇଥିଲି ଯେ ତୁମେ ଆମ ପରିବାରର ମର୍ଯ୍ୟଦାକୁ ଏତେ ଗୁରୁତ୍ୱ ଦେଉଥିଲବୋଲି । ସେତେବେଳେ ମୋ ପାଠପଢ଼ା ମଧ୍ୟ ସରି ନଥାଏ । ଏଣୁ ତୁମେ କହିଥିଲ ଗ୍ରାଜୁଏସନ୍ ସରିବା ପରେ ବିବାହ କରିବା । ଯା'ଭିତରେ ନାନୀମାନଙ୍କର ମଧ୍ୟ ବିବାହ ସରିଯାଇଥିବ । ଆମ ବିବାହକୁ ବାପା-ବୋଉ ସ୍ୱୀକାରୋକ୍ତି ଦେଇଥିବା ଜାଣି ଆହୁରୀ କୁରୁଳି ଉଠିଥିଲି । ତୁମେ ମଧ୍ୟ ଖୁସିଥିଲ । ତା'ପରଦିନ ତୁମେ ଆଖିରେ ଲୁହଭର୍ତ୍ତୀ କରି ଚାଲିଆସିଥିଲ ଏବଂ ମୋତେ ଦେଖିବା ସଙ୍ଗେ ସଙ୍ଗେ ମୋ ପାଦ ଧରି ଦେଲ । ତୁମର ଏପରି ଅବାଞ୍ଛିତ ଭାବରେ ଅନିୟମ କାର୍ଯ୍ୟ ଦେଖି ମୁଁ ଖୁବ୍ ତଟସ୍ଥ ହୋଇପଡ଼ିଲି ଏବଂ ତୁମ ହାତଠାରୁ ମୋ ପାଦକୁ ଛଡ଼ାଇ ନେଇଥିଲି । ତା'ପରେ ଏପରି କ'ଣ ପାଇଁ

କଲ, ମୁଁ ପ୍ରଶ୍ନ କଲି। ତୁମେ କିଛି ଗୋଟାଏ କହିବାକୁ ଯାଉଛ ହଠାତ୍ ମାଆ ଚା' କପ୍ ଧରି ଚାଲିଆସିଲେ। ତୁମେ ମାଆଙ୍କ ସହ କିଛି କଥାବାର୍ତ୍ତା କଲ। ମାଆ ଚାଲିଯିବା ପରେ ମୋର ପାଦ ଧରିବାର କାରଣ ତୁମକୁ ପଚାରିଥିଲି। ତୁମେ କିନ୍ତୁ କୌଣସି ଉତ୍ତର ଦେଲ ନାହିଁ। ଏତେ ଦିନର ଅନୁଭୂତି ପରେ ମୁଁ ତାର ଉତ୍ତର ପାଇସାରିଛି। ମୋର ବିଶ୍ୱାସ, ଆଦର୍ଶ, ନିଷ୍ଠା ଆଗରେ ତୁମର ହୃଦୟ ହାର ମାନିଯାଇଥିଲା। ସେଥିପାଇଁ ହୁଏତ ତୁମେ ମୋ ଆଗରେ ସତ୍ୟ ପ୍ରକାଶ କରିବାରେ ସାହାସ କରିପାରିଲନାହିଁ। କିନ୍ତୁ ଜାଣିରଖ ବରୁନ୍ ହୁଏତ ସେତେବେଳେ ସତ କଥାଟି କହିଦେଇଥିଲେ ମୁଁ ଆଜି ଏପରି କଷ୍ଟ ପାଉନଥାନ୍ତି। ତୁମ ମୁହଁରୁ ସତ୍ୟଟି ଶୁଣି ହୁଏତ ସେତେବେଳେ ତୁମଠୁ ଦୂରେଇ ଯିବାର ଏହି ଅଭିପ୍ରାୟ କଦାପି କରି ନଥାନ୍ତି। ଆଜି କିନ୍ତୁ ତୁମେ ମୋ ପାଖରେ ଦୟାର ପାତ୍ର। ଆଉ ଶବ୍ଦ ମଧ୍ୟ ନାହିଁ ମୋ ପାଖରେ ତୁମକୁ କିଛି କହିବାକୁ।

ତୁମେ ଏହିଭଳି ମଝିରେ ମଝିରେ ଅଲଗା ଅଲଗା ଲାଗୁଥିବା କାରଣ ହୁଏତ ମୁଁ ଖୋଜିଥିଲେ ପାଇପାରି ଥାଆନ୍ତି। କିନ୍ତୁ! ମୁଁ ସେପରି କରି ନ ଥିଲି। କାରଣ ତୁମ ଉପରେ ମୋର ପ୍ରଗାଢ଼ ବିଶ୍ୱାସ ଥିଲା। ଆଜି କିନ୍ତୁ ବୁଝୁଛି ଏପରି ବିଶ୍ୱାସ କରିଯିବା ଥିଲା ମୋର ସବୁଠାରୁ ବଡ଼ ମୁର୍ଖାମୀ। ବିଶ୍ୱାସ ବା କରନ୍ତିନି କିପରି ମୋ ଆଖି ସାମ୍ନାରେ ତୁମ ଚିତ୍ରିତ ଚିତ୍ରପଟଟି ସେତେବେଳେ ଛାଇ ଯାଇଥିଲା। ସେଦିନ ତୁମ ମାଆଙ୍କୁ ନେଇ ଆମ ଘରକୁ ଆସିବା ଏବଂ ମାଆଙ୍କ ଆଖିରେ ମୋ ପ୍ରତି ଥିବା ଶ୍ରଦ୍ଧା ଏବଂ ସ୍ନେହ ରୂପକ ଚାହାଣୀକୁ ଭୁଲି ପାରିନଥିଲି। ତୁମ ପରିବାରର ଛୋଟରୁ ବଡ଼ ସମସ୍ତେ ମୋତେ ଖୁବ୍ ଖୁସିରେ ବୋହୂ ରୂପରେ ଗ୍ରହଣ କରି ନେଇଥିବା କଥା ତୁମଠାରୁ ଶୁଣି ମୁଁ କିପରି ଅବା ତୁମ ଉପରେ ଅବିଶ୍ୱାସ କରିପାରିଥାଆନ୍ତି ? ମନେ ମନେ ସ୍ୱପ୍ନର ନଅର ତୋଳୁଥିଲି। ଯେଉଁଠାରେ ଗୋଡ଼ି ମାଟି ଦେଇ ତୁମକୁ ଗଢ଼ିବା ପାଇଁ କହିଥିଲି ଏକ ଘର। ଏବଂ ତା' ଭିତରେ ଗଚ୍ଛିତ ଆସବାବ ପତ୍ରକୁ ସଜାଡ଼ି ନେଉଥିଲି। "ମୋ ବାପା ଦେଇଥିବା ଯୌତୁକରେ ଘରଟି ପୂର୍ଣ୍ଣ କରିଦେ......"। ଏତିକି କହିଛି କି ନାଇ ମୋ ମୁହଁରେ ହାତ ରଖି ମୋ କଥା ବନ୍ଦ କରିଦେଲ, କଥାଟି ବନ୍ଦ କରିବା ଉଦ୍ଦେଶ୍ୟରେ। ଯୌତୁକ କଥା ଶୁଣି ତୁମେ ମୋ ଉପରେ ପ୍ରଚଣ୍ଡ

ରାଗିଯାଇଥିଲ ଏବଂ କହିଥିଲ, "କାଇଁ ମୁଁ ଅକର୍ମଣ୍ୟ କି? ତୁମ ବାପ ଘରୁ ଖଣ୍ଡେ ରୁମାଲ ମଧ୍ୟ ଆସିବନି ମୋ ଘରକୁ।" ଇସ୍ କି ରୋମାଞ୍ଚ ଭରି ଦେଇଥିଲା ସେଦିନ ତୁମ ମୁହଁରୁ ନିସୃତ ଏହି ପଦେ କଥା। ତୁମ ଏହି କଥା ପଦକ ମୋତେ ଆହୁରୀ ଆକର୍ଷିତ କରିଦେଇଥିଲା ତୁମ ଆଡ଼କୁ। ତୁମେ କେବଳ ମୋତେ ହିଁ ଚାହଁ, ଏ ଲାଳସା ସମାଜ ପରି ତୁମେ ଅର୍ଥ ପିପାସୁ ନୁହଁ, ଏହା ଜାଣି ତୁମ ପ୍ରତି ମୋର ଭଲ ପାଇବା ଅଧିକ ବଢ଼ିଯାଇଥିଲା। ମୁଁ ମଧ୍ୟ ଗର୍ବ ଅନୁଭବ କରୁଥିଲି ତୁମକୁ ପାଇ। ତୁମ ପୋଷାକ ପତ୍ର କିପରି ହେବ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲି। ନିଜେ ଯାଇ ତୁମ ପାଇଁ ପ୍ୟାଣ୍ଟ, ସାର୍ଟ, ଜୋତା, ମୋଜା, ଟାଏ କିଣି ଆଣୁଥିଲି। ଏଥିରେ ତୁମର ବ୍ୟକ୍ତିତ୍ୱ ଆହୁରୀ ଆକର୍ଷଣୀୟ ହୋଇ ଉଠୁଥିଲା ବୋଲି ତୁମ ସାଙ୍ଗସାଥି କହୁଥିଲେ। ମୁଁ କୁଆଡ଼େ ଦିନକୁ ଦିନ ସୁନ୍ଦର ଦିଶୁଥିଲି। ହୃଦୟରେ ଆନନ୍ଦର ମେଳା ବସିଥିଲେ ଶରୀରରେ ତା'ର ପରିପ୍ରକାଶ ଘଟିଥାଏ କୁଆଡ଼େ ଏ କଥା ତୁମଠୁଁ ଶୁଣିଥିଲି କେତେଥର।

ବାସର ରାତିର ବାସ୍ନା ଏଯାଏଁ ଭୁଲି ପାରିନି ମୁଁ। ରଜନୀ ଗନ୍ଧାର ବାସ୍ନା ସାଙ୍ଗକୁ ଗୋଲାପ କଢ଼ର କୁନି କୁନି କଣ୍ଟାମାନଙ୍କର ଆଘାତ ଆଜି ଯାଏଁ ମୋତେ ତୁମର ସ୍ପର୍ଶର ଅନୁଭୂତି ଦେଇ ଚାଲିଛନ୍ତି। ତୁମେ କ'ଣ ଭାବୁଛ ଦୁଇଟା ନଗ୍ନ ଶରୀର ଦେହ ଦିଆନିଆ ହେବେ ତା'ପୁଣି ସୁସଜ୍ଜିତ ପଲଙ୍କ ଉପରେ ସେଇଟା କ'ଣ ବାସର ରାତି ? ମୋ ପାଇଁ ଦେହ ନୁହେଁ ଫୁଙ୍ଗୁଳା ମନ ଭିତରର ମିଳନ ହିଁ ପ୍ରକୃତ ସଂଭୋଗ। ଆଉ ସେଥିରେ ମୁଁ ପାଏ ଅଶେଷ ତୃପ୍ତି ଆଉ ଅସରନ୍ତି ସନ୍ତୁଷ୍ଟି। ମୋ ଓଠର ଗୋଲାପି ରଙ୍ଗ ଆଗରେ ଗୋଲାପ ଫୁଲର ରଙ୍ଗ ଯେ ପାଣିଚିଆ ଲାଗେ ଏକଥା ତୁମେ ମୋତେ କହିଥିବ କେତେଥର। ମୋ ଗଳାରେ ତୁମ ଚୁମ୍ବନର ସ୍ପର୍ଶ ମୋତେ ଦିଏ ସ୍ୱର୍ଗୀୟ ସୁଖର ଅନୁଭୂତି। ମୋ ଶରୀରର କଳା କେଶ, ମୁଖ ମଣ୍ଡଳର ଆକର୍ଷଣୀୟ ଗଠଣ ଆଉ ମନଲୋଭା ଶରୀରକୁ ଯେ କେତେ ପୁରୁଷ ଆଗ୍ରହ ପ୍ରକାଶ କରିଛନ୍ତି ତାର ହିସାବ ନାହିଁ। କିନ୍ତୁ ଗୋରା ତକ୍‌ତକ୍ ଏ ଅଡତାଳିଶ କିଲୋ ଓଜନର ଏ ଦେହଟା କେବଳ ବରୁନ୍‌ର ଏକଦମ୍ ବରୁନ୍‌ର। ଖାଲି ଦେହ ନୁହେଁ ମନଟା ମଧ୍ୟ ଦେଇସାରିଛି ତୁମକୁ ଜନ୍ମ ଜନ୍ମାନ୍ତର ପାଇଁ। ଫୁଲଟିଏ ଉଅଁର

ଖୋଜେ ଆଉ ନଦୀଟିଏ ସମୁଦ୍ର, ନାରୀ ପୁରୁଷର ସାନ୍ନିଧ୍ୟ ନପାଇଲେ ତା'ଜୀବନ କୁଆଡେ ଅସଂପୂର୍ଣ୍ଣ। କିନ୍ତୁ ମୁଁ ତୁମକୁ କେବେଠାରୁ ନିଜର କରିସାରିଛି । ମୋ ହୃଦୟର ସ୍ପନ୍ଦନରେ ତୁମର ଉପସ୍ଥିତି ଅନୁଭବ କରିଛି ବାରମ୍ବାର। ତୁମ ସହିତ ସଂପର୍କ ମୋର ଶରୀରିକସ୍ତରରେ ଖୁବ୍ ସିମୀତ ଥିଲା ସତ କିନ୍ତୁ ମାନସିକ ସ୍ତରରେ ମୁଁ ସଂପୂର୍ଣ୍ଣ ରୂପେ ସମର୍ପିତ ହୋଇସାରିଥିଲି ତୁମ ପାଖରେ । ଆଉ ସେହି ସଂପର୍କର ସାକ୍ଷୀ ସ୍ୱରୂପ ମୋ ଗର୍ଭରୁ ଜନ୍ମ ନେଲା ଆମ ପ୍ରେମର ପ୍ରତୀକ। ହେଇପାରେ ମୋର ଏପରି ବକ୍ତବ୍ୟ ତୁମକୁ ବାଚାଳତା ଲାଗିପାରେ କିନ୍ତୁ ଏହା ସତ୍ୟ ଯେ ଭାବନାରେ ତୁମେ ମୋ ସନ୍ତାନର ପିତା।

ସାଙ୍ଗସାଥି ମେଳରେ କନ୍ୟା ସନ୍ତାନଟିର ଜନନୀ ବୋଲି କହିବାକୁ ମଧ୍ୟ ପଛଘୁଞ୍ଚା ଦେଉନଥିଲି। ସାଙ୍ଗମାନେ ହସୁଥିଲେ ଏବଂ ହସରେ କଥାଟାକୁ ଉଡ଼ାଇ ଦେଉଥିଲେ। ଯେଉଁମାନଙ୍କର ଏକଥାଟି ସହ୍ୟ ହେଉନଥିଲା ସେମାନେ ମୋତେ ଥଟ୍ଟାଟାପରା କରି କୁହନ୍ତି ଯଦି ପାରୁଛୁ କଉ ପାଗଳାଖାନାରେ ଟ୍ରିଟ୍‌ମେଣ୍ଟ ହୋଇଯାଆ । ଆଉ କେହି କେହି କହୁଥିଲେ, 'ଝିଅ ତୋର କେତେ ପାଠ ପଢ଼ିଲାଣି... ?' ହୁଁ ସେମାନେ କଉଠୁ ଜାଣିବେ ମୋ ଝିଅ ଏଯାଏଁ ଦୁଧ ବି ଛାଡ଼ିନି। କଲେଜରୁ ଶୀଘ୍ର ଶୀଘ୍ର ଚାଲି ଆସୁଥାଏ ଝିଅକୁ ଖୁଆଇବା ପାଇଁ ସତରେ ଛୁଆକୁ ଛାତିରେ ଜାକି ଖୁଆଇବାର ଆନନ୍ଦରେ ମାଆଟିଏ କେତେ ପୂର୍ଣ୍ଣତା ପାଏ। ଆଃ....କି ତୃପ୍ତି।

ତୁମ ପ୍ରତି ମୋର ଏତେ ଦୁର୍ବଳତା ଥିଲେ ହେଁ ସମାଜକୁ ତଥା ମୋ ପରିବାରକୁ କେବେ ପଛ କରି ନଥିଲି। ଆମ ସଂପର୍କରେ କିଛି ପାପ ସ୍ପର୍ଶ ନ କରୁ ଏଥିପ୍ରତି ମୁଁ ଖୁବ୍ ସଜାଗ୍ ଥିଲି। ଏଣୁ ପରେ ପରେ ଅନେକ ଦିନ ଆଉ ତୁମ ସହ ଦେଖା କରୁନଥିଲି। ଯ'ଦ୍ୱାରାକି ତୁମେ ମୋ ଉପରେ ଖୁବ୍ ଅଭିମାନ କରୁଥିଲ। ମୁଁ ବା କ'ଣ କରନ୍ତି ଯେ ? ଝିଅଟିଏ ବଡ଼ ହେଲେ ଆମ ସମାଜରେ ତାକୁ କେତେ ନୀତିନିୟମ ମାନି ଚଳିବାକୁ ପଡେ । ଆଉ ଯଦି ନେଡ଼ିଗୁଡ଼ କହୁଣୀକୁ ବୋହିଯାଏ ତେବେ କଥା ସରିଲା। ତୁମକୁ ଖୁବ୍ ବୁଝାଏ କିନ୍ତୁ ତୁମେ ଯେମିତି ଗୋଟାଏ ଅବୁଝା ମଣିଷ।

ତୁମ ସାଙ୍ଗରେ ଦେଖା ହେଲା ମାତ୍ରେ ମନର ସବୁ ଦୁଃଖ, କ୍ଷୋଭ ମେଣ୍ଟିଯାଏ। ତୁମକୁ ବହୁଥର ବହୁ ବାର ତୁମର ନୂଆ ଅଫିସ୍‌ର ଆଉ ନୂଆ ସହକର୍ମୀମାନଙ୍କ କଥା ପଚାରିଛି। ତୁମେ ବହୁବାର ତୁମ ନୂଆ ଅଫିସ୍‌କୁ ମୋତେ ଡାକିଛ କିନ୍ତୁ ସମାଜର କଟାକ୍ଷକୁ ଭୟକରି ମୁଁ କେବେ ତୁମ କଥା ରଖିପାରିନାହିଁ। ଥରେ କୌଣସି କାରଣ ବଶତଃ ତୁମ ଘରକୁ ଫୋନ୍ କରିଥିଲି ପତଳା କଣ୍ଠରେ ଜଣେ ମହିଳା ଉତ୍ତର ଦେଲେ ତୁମେ ଘରେ ନାହଁ । ମୁଁ ଫୋନ୍ କାଟି ଦେଇଥିଲି। ଆଉ ଯେତେବେଳେ ତୁମ ସହିତ ଦେଖାହେଲା ତୁମକୁ ପ୍ରଶ୍ନ କରିଥିଲି ସେ ମହିଳାଙ୍କୁ ନେଇ ତୁମେ କହିଥିଲ ତୁମର ଭଉଣୀ ବୋଲି ତୁମ ଉପରେ ମୋର ଏତେ ବିଶ୍ୱାସ ଥିଲା ଯେ ତୁମର ସେହି କଥାକୁ ମୁଁ ସେତେବେଳେ ବିଶ୍ୱାସ କରିନେଇଥିଲି। ଏହାପରେ ଅନେକ ଥର ମୁଁ ସେହି ମହିଳାଙ୍କ ସହିତ କଥା ହୋଇଛି । ହଠାତ୍ ମୁଁ ଅସୁସ୍ଥ ହେଲି ମୁଣ୍ଡ ଉପରେ ପରୀକ୍ଷା, କିପରି ପରୀକ୍ଷା ସରିବ ଏବଂ ଫଳ ବାହାରିବ। ମୋ ବିବାହରେ ଗ୍ରାଜୁଏସନ୍‌ଟି ସତେ ଯେପରି ପାଚେରୀ ସୃଷ୍ଟି କରୁଥିଲା । ଆଉ ଦଶ ଦିନ ବାକି ଥାଏ ଶେଷ ପେପର୍ ସରିବାକୁ ସେପଟେ ତୁମର କିଛି ଖବର ଅନ୍ତର ନାହିଁ। ଖୁବ୍ ବିଚଳିତ ହେଲି। ଖବର ନେଲି ତୁମେ ଟୁର୍‌ରେ ଯାଇଛ। ମୋର ଅସୁସ୍ଥତା କଥା ଜାଣି ମଧ୍ୟ ମୋତେ କୌଣସି ଯୋଗାଯୋଗ କରିନଥିବାରୁ ମୁଁ ଅଭିମାନ କଲି । ଆଉ ନିଷ୍ପତ୍ତି ନେଲି ତୁମ ସହିତ କେବେ କଥା ହେବି ନାହିଁ । ଏପଟେ ଝିଅର ଅଳି ହର୍‌କତ୍ ପରୀକ୍ଷା ପାଇଁ ପ୍ରସ୍ତୁତି ବେଳେ ମୋତେ ବାରମ୍ବାର ବ୍ୟାଘାତ ସୃଷ୍ଟି କରୁଥିଲା। ତୁମର ଅନୁପସ୍ଥିତିର ଯନ୍ତ୍ରଣା, ପରୀକ୍ଷାର ବୋଝ, ଝିଅର ଦାୟିତ୍ୱ ଏସବୁ ମୋ ପରି ଏକୁଟିଆ ମଣିଷକୁ ଅସହାୟ କରିଦେଉଥିଲା। ତୁମକୁ ମନେ ମନେ ଖୁବ୍ ଖୋଜିଛି ।

ମୋ ଅସହାୟପଣକୁ ଦେଖି ଭଗବାନଙ୍କର ମୋ ପ୍ରତି ଦୟା ଆସିଗଲା ବୋଧେ। ଘଟଣାକ୍ରମରେ ଜାଣିଲି ତୁମେ ବିବାହିତ। କେମିତିବା ବିଶ୍ୱାସ କରିନଥାନ୍ତି ତୁମର ସ୍ତ୍ରୀଙ୍କ ନିମନ୍ତ୍ରଣରେ ମୁଁ ତୁମ ଘରକୁ ଯାଇଥିଲି। ତୁମେ ମୋ ପ୍ରତି ଏପରି କ’ଣ ପାଇଁ କଲ ବରୁନ୍ ? ମୁଁ ଆଜି ନିଜକୁ କ୍ଷମା ଦେଇପାରୁନାହିଁ। ଅଜାଣତରେ ହେଉ ପଛେ ମୁଁ ଗୋଟିଏ ନାରୀ ହୋଇ

ଆଉ ଗୋଟିଏ ନାରୀର ଅଧିକାରରେ ଭାଗବାଣ୍ଟିବାକୁ ବସିଥିଲି। ମୁଁ ନିଶ୍ଚିତ ଅଛି ହୃଦୟର ଯେଉଁ ନିଭୃତ କୋଣରେ ତୁମକୁ ସ୍ଥାନ ଦେଇସାରିଛି ସେ ସ୍ଥାନ ଆଉ କେହି ନେଇପାରିବେ ନାହିଁ । ବାକି ଜୀବନ ମୋ ପ୍ରେମର ସ୍ମୃତିରେ ମୋତେ ବଞ୍ଚିବାକୁ ହେବ ।

ତୁମ ସ୍ତ୍ରୀ କେହି ବି ହୁଅନ୍ତୁନା କାହିଁକି ପ୍ରକୃତରେ ସେ ଜଣେ ତୁମର ଶୁଭ ଚିନ୍ତକ ଆଉ ମୋର ମଧ୍ୟ। ଯେମିତି ମୁଁ ତୁମ ପ୍ରସ୍ତୁତ ଜାଲରେ ନପଡେ ତା'ପୂର୍ବରୁ ତୁମ ଅତୀତ ମୋ ସାମ୍ନାରେ ଆଣି ସେ ମୋତେ ସତର୍କ କରାଇ ଦେଇଥିଲେ । ଏହା ପରେ ବି ମୋ ମନ ମାନିଲାନି, ପ୍ରକୃତ କଥାଟି ଜାଣିବା ପାଇଁ ମୁଁ ଶେଷଥର ସେଦିନ ତୁମ ସହ ସାକ୍ଷାତ କଲି କଫି ସପ୍‌ରେ। ଶେଷ ସାକ୍ଷାତରେ ତୁମ ମୁହଁରୁ ନିଃସୃତ କିଛି ପରୋକ୍ଷ ରୂପୀ ପ୍ରତିଭାଷା ମୋର ବିଶ୍ୱାସକୁ ଆହୁରୀ ଦୃଢ଼ କରିଦେଲା । ତୁମେ ଏହିପରି ମୋର ବିଶ୍ୱାସ ସହିତ କାହିଁକି ଖେଳୁଥିଲ, ତାହା ପ୍ରଶ୍ନ କରିବାକୁ ଚାହିଁ ମଧ୍ୟ କରିପାରିନଥିଲି ସେଦିନ । ମୁହୂର୍ତ୍ତକ ମଧ୍ୟରେ କେଉଁ ଅତଳ ଗହ୍ୱର ମଧ୍ୟକୁ ମୁଁ ଖସିଗଲି ବୁଝିପାରିଲିନାହିଁ କିଛି । ପ୍ରଖର ଦିବା ଲୋକରେ ମୋ ଚତୁର୍ଦ୍ଦିଗ ଅନ୍ଧାର ହୋଇଗଲା, ଚେତା ହରାଇ ପଡିଲି ।

କିନ୍ତୁ, ତୁମ ସ୍ମୃତି ? ସେ କ'ଣ ମୋ ଭିତରୁ ପୋଛି ଦେବା ସମ୍ଭବ ବରୁନ୍ ? ଚନ୍ଦନ ଭଳି ତୁମ ସ୍ମୃତି ଦିନେ ମୋତେ ସୁରଭିତ କରୁଥିଲା। ଆଜି ଅନୁଭବ ହେଉଛି ସେ ଭୟଙ୍କର ସ୍ମୃତି କ୍ୟାନ୍‌ସର ଭଳି ମୋ ଦେହସାରା ଚରିଯାଉଛି। ନିଃଶେଷ ହୋଇଯାଉଛି ମୁଁ ନିଜ ଭିତରେ। ମୋ ଅନ୍ତର୍ଦାହ କାହାରିକୁ ବୁଝାଇ ପାରିବିନି। ବୁଝିଥିଲେ ବୁଝିଥାନ୍ତ ତୁମେ, କିନ୍ତୁ ସେ ଅଧିକାର ତ ତୁମେ ହରାଇ ବସିଛ। କେମିତି ତୁମେ ଭାବିପାରିଲ ଆଉ ଜଣକୁ ବାହା ହୋଇଥିବା ତୁମର ଏହି ସତ୍ୟଟିକୁ ଜାଣିବା ପରେ ବି ମୁଁ ତୁମ ସହ ସମ୍ପର୍କ ରଖିବି ବୋଲି ? ସେ ସମ୍ପର୍କର ସଂଜ୍ଞା କ'ଣ ହେବ ଜାଣିଛ ? ମୋ ପ୍ରତି ଏଭଳି ଶ୍ରଦ୍ଧା ଓ ସମ୍ମାନ ତୁମ ମନରେ ? ଧିକ୍କାର ଆସୁଛି ନିଜ ଉପରେ। କେମିତି ମୁଁ ଏଭଳି ଅନ୍ଧ ହୋଇଯାଇଥିଲି, ତୁମପରି ଜଣେ ବିଶ୍ୱାସବିହୀନ ମଣିଷକୁ ଜୀବନ ସର୍ବସ୍ୱ ବୋଲି ଭାବି ନେଇ। ତୁମକୁ ଯେତିକି ଭଲ ପାଉଥିଲି ଯଦି ଭଗବାନଙ୍କୁ ସେତିକି ଭଲ ପାଇଥାଆନ୍ତି, ଏଇ ମଣିଷ ଜନ୍ମରୁ ହୁଏତ ଉଦ୍ଧାର ପାଇଯାଇ ଥାଆନ୍ତି। ପରୀକ୍ଷା

ମାତ୍ର ଆଉ ଦିନକ ପରେ । ଏତେ ଦିନର ପରିଶ୍ରମ ସବୁ ଅକାରଣରେ ଚାଲିଗଲା । ତୁମର ପ୍ରତାରଣାରେ ମୁଁ ସବୁକିଛି ଭୁଲିଗଲି । ତୁମେ ହିଁ ମୋର ପ୍ରେରଣା ଥିଲ । ନିଷ୍ପତ୍ତି ନେଲି ବାକିଥିବା ପେପର୍‌ର ପରୀକ୍ଷା ଆଉ ଦେବିନାହିଁ । ପରୀକ୍ଷାରେ ବି ଥିଲା କ'ଣ ? ସବୁ ସ୍ୱପ୍ନ ତ ଚୂର୍ଣ୍ଣ ବିଚୂର୍ଣ୍ଣ କରିସାରିଥିଲା ତୁମର ପ୍ରତାରଣା । ପରୀକ୍ଷା ଦିନ ଆସିଲା । ମୋର ପରୀକ୍ଷା ନଦେବା କଥା ଶୁଣି ବାପା ମାଆ ବିରକ୍ତି ପ୍ରକାଶ କଲେ । ବାପା ଆଶ୍ଚର୍ଯ୍ୟ ହୋଇ ମୋତେ ପ୍ରଶ୍ନ କଲେ ଏତେ ଦିନ ତ ଭଲରେ ଭଲରେ ସବୁ ପରୀକ୍ଷା ଦେଲୁ ଶେଷ ପେପର ନଦେବା ପାଇଁ କାହିଁକି ଯିଦ୍ କରୁଛୁ । କେମିତି ବା କହିଥାନ୍ତି ସତ୍ୟ ତାଙ୍କୁ । କାରଣ ସେମାନଙ୍କର ସ୍ୱୀକୃତିରେ ହିଁ ଆରମ୍ଭ ହୋଇଥିଲା ମୋ ସ୍ୱପ୍ନର ଦାମ୍ପତ୍ୟ ଜୀବନ । କିନ୍ତୁ ପରେ ବାପା ତୁମ ବିଷୟରେ ଜାଣିପାରି ମୋତେ ସଂପର୍କରୁ ଓହରି ଯିବାକୁ ତାଗିଦ୍ କରିସାରିଥିଲେ । ତାଙ୍କର ସ୍ୱୀକୃତି ଆଉ ବାରଣ ମଧ୍ୟରେ ମୁଁ ତୁମକୁ ଗ୍ରହଣ କରିସାରିଥିଲି । ତୁମଠୁଁ ଅଲଗା ହେବା କଥା ମୁଁ ସହଜରେ ଗ୍ରହଣ କରିପାରୁନଥିଲି ।

ସତରେ ବରୁନ୍ ମିଛରେ ହେଉପଛେ ତୁମେ ସଚ୍ଚାପ୍ରେମିକର ଯେଉଁ ଅଭିନୟ କଲ ନା ସତରେ ମୁଁ ତୁମକୁ ନିଃସର୍ତ୍ତରେ ବିଶ୍ୱାସ କରିଗଲି ଆଉ ତାରି ଫଳ ମୋତେ ଆଜି ଭୋଗିବାକୁ ପଡୁଛି । ତଥାପି ନିଜକୁ ପ୍ରକୃତିସ୍ଥ କଲି । ନା ଏସବୁ କଥା କାହାରିକୁ କହିହେବ ନାହିଁ । ବାପାମାଆମାନେ ଖାଲି ତାଙ୍କ ଇଚ୍ଛା ଅନୁଯାୟୀ ସଂପର୍କ ଯୋଡିବେ ଆଉ ସେମାନଙ୍କର ଅହଂକାରରେ ଆଘାତ ହେଲେ ସଂପର୍କରୁ ଓହରି ଯିବାକୁ ବାଧ୍ୟ କରିବେ, ଏହା କ'ଣ ଉଚିତ୍ କଥା ? ପ୍ରଜାପତି ବିବାହ ନାମରେ ପୁଅଝିଅଙ୍କ ଭାବନା ସହିତ ଖେଳିବା କେତେ ଯୁକ୍ତିଯୁକ୍ତ ? ଗୋଟିଏ ଅବିବାହିତ ଝିଅକୁ ଦେଖିବାକୁ ଭଳିକି ଭଳି ଯୁବକ ଆସୁଥିବେ, ତା'ସାଙ୍ଗକୁ ଝିଅର ବାପାମାଆ ସତମିଛ କହି ଝିଅକୁ ସଜ କରି ସେହି ପୁଅ ସାମ୍ନାରେ ବସାଇ ଫାର୍ସ ଦେଖୁଥିବେ ଏସବୁ ପରଂପରା କେତେ ଦିନ ଚାଲିବ ? କେତେବେଳେ ଜାତକ ଶୁଝିଲାନି ତ ଆଉ କେତେବେଳେ ଯୌତୁକର ବାହାନାରେ ଶେଷ ମୁହୂର୍ତ୍ତରେ ବାହାଘର ଭାଙ୍ଗି ବି ଯାଏ । ପ୍ରଜାପତ୍ୟ ବିବାହ ନାଁରେ ସତରେ ଆମର ସମାଜରେ ହେଉଥିବା ଠକାମି ସବୁକୁ ଆଉ ସହ୍ୟ କରିବା ସମ୍ଭବ ନୁହେଁ । ବରଂ ବାପାମାଆଙ୍କ

କଥାରେ କିଛି ଜବାବ୍ ନଦେଇ ଚୁପ୍ ରହିଯିବା ଉଚିତ୍ । ମୁଁ ମଧ୍ୟ ଚୁପ୍ ରହିବାର ନିଷ୍ପତ୍ତି ନେଇ ଅନିଚ୍ଛାସତ୍ତ୍ୱେ ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଲି । ବାପା ରିକ୍ସାଟେ ଡାକି ଆଣିଲେ। ମନରେ ଇଚ୍ଛା ନଥିଲେ ମଧ୍ୟ ରିକ୍ସାରେ ବସିଲି ଦାୟିତ୍ୱବାନ ମଣିଷ ଭଳି ମାଆ ମୋର ମୋ ହାତକୁ କଲମ ଆଉ ଆଡ୍‌ମିଟ୍‌କାର୍ଡ ବଢ଼ାଇଦେଲେ । ସତରେ ବରୁନ୍ ମୋ ଦେହକୁ ଆଉ କାହାରି କଥା ସ୍ପର୍ଶ କରୁନାହିଁ । ଅନ୍ୟର ପରିଭାଷା ବୁଝିବା ପରି ସାମର୍ଥ୍ୟ ସତେ ଯେମିତି ହରାଇ ସାରିଛି । ପରୀକ୍ଷାରେ ବସିବି କେମିତି ? ଇଚ୍ଛା କଲି ଜୀବନ ହାରିଦେବାକୁ । ରିକ୍ସା ସେତେବେଳେ ଚାଲୁଥିଲା ସହରର ସେହି ବଡ ପୋଲ ଉପରେ । ରିକ୍ସାକୁ ଠିଆ କରି ପୋଲର କଡ଼ରେ ଠିଆହୋଇ ତଳକୁ ଚାହିଁଲି। ଜୀବନରେ ଭୟ କ'ଣ ମୁଁ ଜାଣି ନଥିଲି କିନ୍ତୁ ସେତେବେଳେ ବୋଧେ ବଞ୍ଚିବାର ଭୟ ମୋତେ ଗ୍ରାସି ସାରିଥିଲା । ସେଥିପାଇଁ ହୁଏତ ଆତ୍ମହତ୍ୟାର କଥା ମୋ ମନକୁ ଆସିଲା । ହଠାତ୍ ରିକ୍ସା ଚାଳକ ପାଟି କରି କହିଲା, 'ଦିଦି ସିଆଡେ ପରୀକ୍ଷା ପାଇଁ ଡେରି ହେଉଛି ଯେ..' ପଛ କରି ଚାହିଁଲି ଦେଖିଲି ପୋଲର ଆର କଡରେ ଗୋଟିଏ ସତୁରୀ ବର୍ଷର ବୁଢ଼ୀ ଭଙ୍ଗାଟିଣ ଡବାଗୁଡିକୁ ଧରି ମନେ ମନେ କାହା ସାଙ୍ଗେ କଥା ହେଉଛି । ଉତ୍ସୁକତାର ସହିତ ତା'ପାଖକୁ ଗଲି ପାଖରେ ପହଞ୍ଚିଲାବେଳକୁ ସେ ଡବାର ସାହାଯ୍ୟରେ ସେ ତା' ପସନ୍ଦର ନଅରଟିଏ ଗଢ଼ିସାରିଥିଲା। ମୋତେ ଦେଖୁ ଦେଖୁ ଗୋଡରେ ଆଡେଇ ଭାଙ୍ଗିଦେଲା, କହିଲା ନା' ମୋତେ କାହାର ସାହାଯ୍ୟ ଦରକାର ନାହିଁ ମୁଁ ନିଜେ ମୋ ଘର ଗଢ଼ିବି, ମୁଁ ନିଜେ ମୋ ପରିବାର ବସାଇବି। ଧକ୍‌କାର ଲାଗିଲା ମୋତେ ତା' କଥା ଶୁଣି ବାହାରକୁ ଅସହାୟ ଦିଶୁଥିବା ମଣିଷଟା ଯେ ଭିତରେ ଏତେ ଆତ୍ମବିଶ୍ୱାସକୁ ଖୁନ୍ଦି ରଖିଛି ତାହା ନଦେଖିଲେ ବିଶ୍ୱାସ କରି ହେବନି । କିଛି ନକହି ମୁଁ ରିକ୍ସାରେ ବସିଗଲି । ଆଉ ବୁଝିନେଲି ଯେ ସେ ବୁଢ଼ି ବାୟାଣୀଟି ଜୀବନର କେଉଁଏକ ଆହତ ଅପରାହ୍ନରେ ଏପରି ଆଘାତ ପାଇଛି ଯେଉଁପରି ଆଘାତରେ ମୁଁ ସେଦିନ ବିବ୍ରତ ହେଉଥିଲି । ଆମ ଦୁହିଁଙ୍କ ଭିତରେ ଗୋଟିଏ ଫରକ୍ ଥିଲା ମୁଁ ବଞ୍ଚିବାକୁ ଭୟ କରୁଥିଲି ଆଉ ସେ ନିର୍ଭୟରେ ବଞ୍ଚୁଥିଲା। ଏହା ଭାବୁଭାବୁ ମୁଁ ପରୀକ୍ଷା ସେଣ୍ଟରରେ ପହଞ୍ଚି

ସାରିଥିଲି । ରିକ୍ସାବାଲାକୁ ପଇସା ବଢ଼ାଇ ଦେଇ ମୁଁ ପରୀକ୍ଷା ହଲ୍ ଭିତରେ ପଶିଗଲି। ସେତେବେଳକୁ ପରୀକ୍ଷା ଆରମ୍ଭ ହୋଇ ଦଶମିନିଟ୍ ଗଡିଗଲାଣି। ମୋତେ କଲେଜରେ ସମସ୍ତେ ଜାଣନ୍ତି ଆଉ ଆଦର ମଧ୍ୟ କରନ୍ତି। ମୋତେ ଦେଖି ସାର୍ ଆଉ ପିଅନ୍ ମୋ ଆଡକୁ ପ୍ରଶ୍ନପତ୍ର ଆଉ ଖାତା ବଢ଼ାଇଦେଲେ । କିନ୍ତୁ ଏ କ'ଣ ପ୍ରଶ୍ନପତ୍ରରେ କିଛି ପଶ୍ନ ଲେଖାନାହିଁ ଯେ ? ମୁଁ ଜାଣିସାରିଥିଲି ତୁମର ପ୍ରତାରଣାର ଯନ୍ତ୍ରଣା ମୋତେ ଭିନ୍ନ ଭିନ୍ନ ରୂପରେ ଆଉ ଭିନ୍ନ ଭିନ୍ନ ଭାବରେ ବାରମ୍ବାର ଆଘାତ କରୁଛି ।

ହଠାତ୍ ଝିଅର କାନ୍ଦିବାର ଶବ୍ଦ ମୋ କାନରେ ବାଜିଲା । ଅଜାଣତରେ ମୋ ହାତ ଭାରି ଭାରି ଲାଗୁଥିବା ମୋ ଛାତି ଆଡକୁ ଚାଲିଗଲା । ଆଉ ସମ୍ଭାଳି ହୋଇ ରହିପାରିଲିନାହିଁ । ପରୀକ୍ଷା ହଲ ଛାଡି ବାହାରକୁ ଚାଲିଆସିଲି ବାହାରେ ସେହି ରିକ୍ସାବାଲା ମୋତେ ଅପେକ୍ଷା କରିଥିଲା । ଘରେ ପହଞ୍ଚି ରିକ୍ସାବାଲାକୁ ପଇସାଦେବାକୁ ଉଦ୍ୟତ ହୋଇଛି ତ ସେ କହିଲା, 'ଦିଦି ଗଲାବେଳେ ଅଧିକା ପଇସା ଦେଇଥିଲ ।' ମୁଁ ଆଶ୍ଚର୍ଯ୍ୟ ହେଲି ଦୁନିଆଁରେ ବି କିଛି କିଛି ମଣିଷ ଅଛନ୍ତି ଯାହାଙ୍କୁ ବିଶ୍ୱାସ କରାଯାଇପାରେ । ତୁମଠାରୁ ପ୍ରତାରିତ ହେଲା ପରେ ସେହି ବିଶ୍ୱାସ ମୋ ମନରୁ ତୁଟି ଯାଇଥିଲା । ସତରେ ଗୋଟିଏ ରିକ୍ସାବାଲାର ଭରସା ଆଗରେ ତୁମେ ବି ଆଜି ହାରିଗଲ ବରୁନ୍। ତୁମଠାରୁ ପ୍ରତାରିତ ହୋଇ ମଧ୍ୟ ତୁମ ସନ୍ତାନର କ୍ଷୁଧାର ଜ୍ୱାଳାକୁ ସହ୍ୟ କରିନପାରି ମୁଁ ପରୀକ୍ଷା ହଲରୁ ଚାଲିଆସିଲି । ତୁମ ଦୋଷର ଦଣ୍ଡ ଝିଅକୁ ବା କାହିଁକି ଦେବି ? ଯାହାକୁ ସ୍ୱାମୀର ସ୍ଥାନ ଦେଇ ଏତେ ସମ୍ମାନ ଦେଇଛି, ନିଜଠୁଁ ଅଧିକ ଭଲ ପାଇଛି ତାକୁ ଭର୍ତ୍ସନା କରିବାକୁ ଜିଭ ଲେଉଟୁନାହିଁ କି ଲେଖିବାକୁ କଲମ ଯାଉନାହିଁ ମୁଁ ଜାଣିନି ଏସବୁ ଲେଖି ମୁଁ ଠିକ୍ କରୁଛି ନା ଭୁଲ୍ ? ଝଡଟାଏ ତ ଆସି ସାରିଲାଣି ବର୍ତ୍ତମାନ ତା'ଭିତର ଦେଇ ଅତିକ୍ରମ କରିବାକୁ ହିଁ ପଡିବ । ଏ ଝଡର ଦୁଃଖଦ ପରିସ୍ଥିତିରେ ତୁମକୁ ଅଭିଶାପ ଦେଲେ ବି ନିଜ ଉପରକୁ ଲେଉଟି ଆସିବ ।

କ'ଣ କରିବି ଆଉ କିଛି ଭାବିପାରୁ ନଥାଏ। ଚାରିଆଡ଼େ ଅନ୍ଧକାର ଦେଖାଯାଉଥାଏ। ଘରେ ବାହାରେ ସବୁଠାରେ ଯେମିତି ଆଜି ଏହି ସତ୍ୟର ସମ୍ମୁଖୀନ ହୋଇ ଏକୁଟିଆ ହୋଇପଡ଼ିଛି।

ପରୀକ୍ଷା ହଲ୍‌ରୁ ସମୟ ଶେଷ ହେବା ପୂର୍ବରୁ ଉଠି ଆସିଥିବାରୁ ବାପାଙ୍କର ବିରକ୍ତି ଏବଂ ମାଆଙ୍କର ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିଲା। ଧିରେ ଧିରେ ଭିତରେ ଘୃଣ ଖାଇଯିବା ହେତୁ ନୀରବ ରହିବାକୁ ପସନ୍ଦକଲି।

ତୁମକୁ ଖାଲି ଏତିକି ବିନତୀ କରୁଛି କାହାର ବିଶ୍ୱାସରେ ଆଘାତ କରନି। ଅନ୍ୟର ଭରସା ଏବଂ ପ୍ରେମକୁ ସମ୍ମାନ ଦେଇ ଶିଖ। ତୁମ ସ୍ତ୍ରୀ ସହିତ ଆଉ ବିଶ୍ୱାସଘାତକତା କରନି। ତୁମ ସ୍ତ୍ରୀ ପ୍ରତି ମୋ ମନରେ ପ୍ରଗାଢ଼ ସମ୍ମାନ ରହିଛି କିଛି ନହେଲେ ନାଇ ତାଙ୍କ ପାଖରେ ତ ସେତିକି ସାହାସଥିଲା ମୋତେ ସତ କହିବାପାଇଁ। ନଚେତ୍ ଯାହା ଟିକିଏ ବଞ୍ଚିବାର ରାହା ମୋ ପାଖରେ ବଞ୍ଚିଯାଇଛି ସେତିକି ହୁଏତ ତୁମର ଅବିଶ୍ୱାସପଣ ନିକଟରେ ଶେଷ ହୋଇଯାଇଥାନ୍ତା। ମୋତେ ଆଉ ସାକ୍ଷାତ କରିବାର ଆଶା ରଖିବ ନାହିଁ। ଅନେକ ଯନ୍ତ୍ରଣା ଦେଇଛ ତୁମେ ମୋତେ। ଏହାପରେ ବି ତୁମର ସ୍ମୃତିକୁ ସାଥିକରି ବଞ୍ଚିବାର ନିଷ୍ପତ୍ତି ମୁଁ ନେଇଛି। ସେହି ସ୍ମୃତିରେ ଏକୁଟିଆ ତୁମେ ନୁହେଁ ମୋ ପ୍ରେମ ମଧ୍ୟ ବାନ୍ଧି ହୋଇ ରହିଛି। ମୁଁ ଜାଣିଛି ପ୍ରେମକୁ ଅବିଶ୍ୱାସ କଲେ ସମୟ ଆସିବ ସମସ୍ତେ ଘୃଣାକୁ ପ୍ରେମକରିବା ଆରମ୍ଭ କରିଦେବେ। ଅନ୍ତତଃ ଏପରି ପ୍ରଥା ମୋଠାରୁ ଆରମ୍ଭ ନହେଉ। ତୁମ ପ୍ରତାରଣାରେ କେବେକେବେ ଆତ୍ମହତ୍ୟାର ଇଚ୍ଛା ମୋ ମନରେ ପ୍ରକଟ ହୋଇଛି। କିନ୍ତୁ ତୁମ ଭଳି ଜଣେ ଆବେଗହୀନ ପୁରୁଷ ପାଇଁ ମୁଁ କ'ଣ ପାଇଁ ମୋ ଜୀବନ ହାରିଦେବି। ବରଖାକୁ ମଣିଷ କରିବାର ଅଛି। ମୁଁ ବଞ୍ଚିବି ବରୁନ୍ ମୋ ପାଇଁ ନୁହେଁ ଆମ ପ୍ରେମ ପାଇଁ ମୋ ଝିଅ ପାଇଁ।

ଶେଷରେ ତୁମର ସୁଖୀ ଦାମ୍ପତ୍ୟ ଜୀବନର ଶୁଭମନାସୁଛି।

ଇତି,

ଜଣେ ଅଭିଶପ୍ତା

ଚିଠିଟି ପଢ଼ି ସାରିଲାବେଳକୁ ବରୁନ୍‌ର ହୃଦୟ ଶୂନ୍ୟ ହୋଇଯାଇଥିଲା। ଅସହାୟତାରେ ଭାଙ୍ଗି ପଡୁଥିଲା ସେ। ଆଖି ଆଗରେ ଯେମିତି ମାଡି ଯାଉଥିଲା ଦିଗନ୍ତବ୍ୟାପୀ ମରୁଭୂମି। ପାଦ ରଖିବା ପାଇଁ ଶ୍ୟାମଳ ମାଟି ଚେନାଏ ନଥିଲା କେଉଁଠି। ପୂର୍ବରୁ ସେ ଏପରି କେତେ ଝିଅଙ୍କ ଦେହ

ଆଉ ମନ ସାଙ୍ଗରେ ମନ ଭରି ଖେଳିଛି କିନ୍ତୁ ଏପରି ଅସହାୟପଣ ତାକୁ କେବେ ଆବୋରି ବସି ନଥିଲା ।

ଶୁଭଦା ତୁମେ ମୋତେ ଖୁବ୍ ନ୍ୟୁନ କରିଦେଲ । କ୍ଷମା ମାଗିବାର ସୁଯୋଗ ବି ଦେଲନାହିଁ । ଅବଶ୍ୟ ମୁଁ କ୍ଷମାର ପାତ୍ର ନୁହେଁ । ତଥାପି ମୋ ଆୟତ୍ତରେ ନଥିବା ମୋ ମନର ଏପରି ଜଘନ୍ୟ ପାପ ପାଇଁ ଯଦି ପାରିବ ମୋତେ କ୍ଷମା କରିଦିଅ । ନଚେତ୍ ମୋତେ ଅଭିଶାପ ଦିଅ ଯେଉଁଥିରେ ମୁଁ ନିଜକୁ ସର୍ବସ୍ୱାନ୍ତ କରିଦେବି । ମନେ ମନେ କହିଉଠିଲା ବରୁନ୍ । ଜୀବନର ଏତେ ଖାଲ ଢ଼ିପ ରାସ୍ତାରେ ଅତିକ୍ରମ କରିଛି ସେ କିନ୍ତୁ ଜୀବନକୁ ନେଇ ଏପରି ଅଭିଜ୍ଞତା ସହିତ ତା'ର କେବେ ମୁହାଁ ମୁହିଁ ହୋଇନଥିଲା ।

ତୁମେ ସାଧାରଣ ମାନବୀ ନୁହେଁ ତୁମେ ଜଣେ ଦେବୀ କି ମହାମାନବୀ । ତୁମକୁ ମୁଁ ପ୍ରତାରଣା କରି ଏତେ ଆଘାତ କଲା ପରେ ମଧ୍ୟ ତୁମେ ମୋର ଶୁଭମନାସୁଛ ଏହା ମୋର ବିଶ୍ୱାସ ହେଉନାହିଁ । କିନ୍ତୁ ତୁମେ ତୁମର ଚିଠି ମାଧ୍ୟମରେ ଅନୁରୋଧ କରିଥିବା ପ୍ରତିଟି କଥାକୁ ମୁଁ ଅକ୍ଷରେ ଅକ୍ଷରେ ପାଳିବି ।



ଶୁଭଦାର ଚିଠି ବରୁନ୍‌କୁ ମାନସିକ ସ୍ତରରେ ନିସ୍ତେଜ କରିଦେବାକୁ ଯଥେଷ୍ଟ ଥିଲା । ଜୀବନସାରା ସେ ପ୍ରତାରିତ କରିଥିବା ଝିଅମାନଙ୍କର କଥା ସବୁ ମନେ ପକାଇ ନିଜକୁ ଧିକ୍‌କାର କରୁଥିଲା । ନିଜ ସ୍ତ୍ରୀ ଏବଂ ପରିବାରକୁ ବିଶ୍ୱାସଘାତ କରି ସେ ସବୁଠାରୁ ଅଧିକ ଯନ୍ତ୍ରଣା ପାଉଥିଲା । ବରୁନ୍‌ର ନୀରବତା ପ୍ରଣତିକୁ କିପରି ଅଡୁଆ ଅଡୁଆ ଲାଗିଲା ।

'ତୁମର କ'ଣ ହୋଇଛି ତୁମେ ଅଲଗା ଲାଗୁଛ ?' ପ୍ରଶ୍ନ କଲା ପ୍ରଣତି ।

'ତୁମେ ଶୁଭଦାକୁ ଭେଟିଥିଲ, ମୋତେ କହିଲନାହିଁ କାହିଁକି ?' ବରୁନ୍ ଓଲଟି ପ୍ରଶ୍ନ କଲା ପ୍ରଣତିକୁ ।

'ତୁମେ କେଉଁ ଶୁଭଦାର କଥା କହୁଛ ? ତୁମ ଜୀବନରେ ତ ଅସଂଖ୍ୟ ଶୁଭଦା ଆସିଛନ୍ତି ଆଉ ଯାଇଛନ୍ତି ।' ପ୍ରଣତି ଉତ୍ତର ଦେଲା ।

'ନା, ମୁଁ ସେହି ଶୁଭଦା କଥା କହୁଛି ଯିଏକି ତୁମ ସ୍ୱାମୀକୁ ସତ୍ ପଥରେ ଆସିବାକୁ ବାଧ୍ୟ କରିଛି ଆଉ ତମ ପରିବାର ପାଇଁ ପ୍ରତି ମୁହୂର୍ତ୍ତରେ ଶୁଭ ମନାସୁଛି ।'

ପ୍ରଣତି ହତ୍‌ବାକ୍ ହୋଇ ବରୁନ୍ ଆଡକୁ ଚାହିଁ ରହିଲା । ବରୁନ୍ ଶୁଭଦା ଦେଇଥିବା ଚିଠିଟି ବଢ଼ାଇଦେଲା ପ୍ରଣତି ଆଡକୁ । ଆରମ୍ଭରୁ ଶେଷ ଯାଏଁ ଏକ ନିଶ୍ୱାସରେ ପଢ଼ିଗଲା ଚିଠିଟାକୁ ପ୍ରଣତି ।

'ଏପରି ବି ଝିଅ ଏ ଦୁନିଆରେ ଅଛନ୍ତି ?' ପ୍ରଣତି କହିଲା ।

'ଅଛନ୍ତି ବୋଲି ତ ପ୍ରେମ ଏଯାଏଁ ବଞ୍ଚିଛି । ଆଉ ମୋ ଭଳି ମଣିଷମାନେ ଠିକ୍ ରାସ୍ତାକୁ ଆସିବାକୁ ବାଧ୍ୟ ହେଉଛନ୍ତି । ତୁମେ ଜାଣିଛ ପ୍ରଣତି ସମସ୍ତେ ମୋର କର୍ମକୁ ନେଇ ମୋତେ ଦୋଷ ଦେଉଛନ୍ତି କେହି କିନ୍ତୁ ଆଜି ଯାଏଁ ଏହାର କାରଣ ଜାଣିବାକୁ ଇଚ୍ଛା କରିନାହାନ୍ତି । ମୁଁ ଯେତେବେଳେ ପିଲାଟିଏ ଥିଲି ଭଲ ପୋଷାକ ହଲେ ମିଳୁନଥିଲା ପିନ୍ଧିବା ପାଇଁ । ପେଟପୁରା ଖାଇବାକୁ ପାଉନଥିଲି । ବାପାଙ୍କର ସୀମିତ ରୋଜଗାର ଆମର ବଡ ପରିବାର ପାଇଁ ଯଥେଷ୍ଟ ନଥିଲା । ପାଞ୍ଚ ଭାଇ ଭଉଣୀଙ୍କ ମଧ୍ୟରେ ମୁଁ ସବୁଠାରୁ ବଡଥିଲି । ସେଥିପାଇଁ ଅଳ୍ପ ବୟସରେ ଘରର ଦାୟିତ୍ୱ ନେବାର ବୋଝ ମୋ ଉପରକୁ ଆସିଯାଇଥିଲା । ସନ୍ଧ୍ୟାବେଳେ ଖାଲି ସମୟ ଦେଖି ମୁଁ ଟିଉସନ୍ କରି ବାପାଙ୍କୁ ରୋଜଗାରରେ ସାହାଯ୍ୟ କରୁଥିଲି । ବାକି ସମୟ ମୁଁ ନିଜ ପଢ଼ାପଢ଼ିରେ ମନ ଦେଉଥିଲି । ଏବଂ ମନେ ମନେ ନିଷ୍ପତ୍ତି ନେଇଥିଲି ପରିସ୍ଥିତି ଯାହା ହେଉନା କାହିଁକି ମୁଁ କେବେ ବି ମୋ ପାଠପଢ଼ାରୁ ବିଚ୍ୟୁତ ହେବି ନାହିଁ । ମୋ ଭିତରର ଏପରି ଜିଦ୍ ମୋତେ ମଣିଷ କରିବାକୁ ସାହାଯ୍ୟ କଲା । ଭଲ ପାଠ ପଢୁଥିବା ହେତୁ ପ୍ରବେଶିକା ପରୀକ୍ଷାରେ କୃତକାର୍ଯ୍ୟ ହୋଇ ମୁଁ ଏତେ ବଡ ପଦବୀରେ ଚାକିରୀ କରିବାର ସୁଯୋଗ ପାଇଲି ।

ପ୍ରଣତି ତୁମେ କେବଳ ତୁମ ବଡ ନଣନ୍ଦ ମୀନାର ଆତ୍ମହତ୍ୟା କଥା ଜାଣିଛ କିନ୍ତୁ ତା'ର କାରଣ ତୁମକୁ ଜଣାନାହିଁ । ମୀନା ପ୍ରେମ ବିବାହ କରିଥିଲା । ସେଠାରେ ବିବାହ କରିବ ବୋଲି ସେ କେତେ ଥର ବାପା ଆଉ ମୋ ସହ ଝଗଡା କରିଛି । ଯେତେବେଳେ ଆମେ ଦେଖିଲୁ ସେ ଆଉ କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନାହିଁ ଆମେ ତା'ପ୍ରସ୍ତାବରେ ରାଜି ହୋଇଗଲୁ । ବିବାହର ଅଳ୍ପ ଦିନ ମଧ୍ୟରେ ମୀନା ଜାଣିନେଲା ତା' ସ୍ୱାମୀ ଗୋଟିଏ ମଦ୍ୟପ ବୋଲି । ଏହା ଛଡା ମୀନାକୁ ମାରଧର୍ କରି ସେ ବାରମ୍ବାର ବାପ ଘରୁ ପଇସା ଆଣିବାକୁ

ତାଗିଦ୍ କରୁଥିଲା। ଯିଦ୍ କରି ଆମ ଅନିଚ୍ଛା ସତ୍ତ୍ୱେ ବାହା ହୋଇଥିବାରୁ ମୀନା ଆମକୁ କିଛି ମୁହଁ ଖୋଲି କହୁନଥିଲା । ହଠାତ୍ ଦିନେ ତା'ର ମୃତ୍ୟୁ ଖବର ଶୁଣି ଭିଣେଇଙ୍କୁ ତା'ର ମୃତ୍ୟୁର କାରଣ ଦର୍ଶାଇ ପୋଲିସ୍ ଆରେଷ୍ଟ କଲା । କିନ୍ତୁ କିଛି ଦିନ ପରେ ପ୍ରମାଣ ଅଭାବରୁ ସେ ଖଲାସ୍ ହୋଇଗଲା । ମୀନାର ଯନ୍ତ୍ରଣା ବାପା ଆଉ ମୁଁ ଅତି ନିକଟରୁ ଦେଖିଥିଲୁ । ସେଥିପାଇଁ ମୁଁ ସ୍ଥିର କରିଥିଲି ଜୀବନରେ କେବେ ମଦ ଛୁଇଁବିନାହିଁ ଏବଂ ମୋ ସ୍ତ୍ରୀକୁ ଅଶେଷ ଭଲ ପାଇବି। ଏହାର କିଛି ବର୍ଷ ପରେ ତୁମ ସହିତ ମୋର ବିବାହ ହୋଇଗଲା। ତୁମର ପରିବାର ଆମ ପରିବାରଠାରୁ ଅଧିକ ଆର୍ଥିକ ସ୍ୱଚ୍ଛଳ ଥିଲେ । ମୋର ପଦବୀକୁ ଆଖିଆଗରେ ରଖି ତୁମ ବାପା ତୁମ ସାଙ୍ଗରେ ମୋର ବାହାଘର କରିବାର ନିଷ୍ପତ୍ତି ନେଇଥିଲେ। ମୁଁ ମଧ୍ୟ କୌଣସି କଥା ବିଚାର ନକରି  ତୁମ ବାପାଙ୍କର ପ୍ରସ୍ତାବରେ ରାଜି ହୋଇଯାଇଥିଲି । ତୁମେ ବାହା ହୋଇ ମୋ ଘରକୁ ଆସିଲ। ପ୍ରଥମେ ସବୁକିଛି ଠିକ୍ ଠାକ୍ ଚାଲିଲା କିନ୍ତୁ ଅଳ୍ପ ଦିନ ଭିତରେ ମୋ ଘର ତୁମକୁ ଅଣନିଶ୍ୱାସୀ ଲାଗିଲା । ତୁମେ ଯିଦ୍ ଧରିଲ ବାପା ମାଆଙ୍କୁ ଛାଡି ତୁମ ବାପା ଦେଇଥିବା ଘରକୁ ଚାଲି ଯିବା ପାଇଁ ଶେଷରେ ମୁଁ ରାଜି ନହେବାରୁ ତୁମ ବାପାଙ୍କର ମଧ୍ୟ ଧମକ ମୋତେ ସହିବାକୁ ପଡିଲା । ମୋ ବାପା ମାଆ ସେମାନଙ୍କର ସମ୍ମାନକୁ ବଞ୍ଚାଇବାକୁ ଯାଇ ତୁମକୁ ସାଙ୍ଗରେ ନେଇ ମୋତେ ଅଲଗା ରହିବା ପାଇଁ ଅନୁରୋଧ କଲେ । ମୋ ପାଖରେ ଆଉ କୌଣସି ଉପାୟ ନଥିଲା । ଅନିଚ୍ଛା ସତ୍ତ୍ୱେ ମୁଁ ତୁମ ବାପାଙ୍କ ଘରକୁ ଚାଲିଆସିଲି । କିନ୍ତୁ ମୋ ମନ ଭିତରର ଅଭିମାନ ମୋତେ ସବୁ ସମୟରେ ଚେତାଇ ଦେଉଥିଲା ଯେ ମୋର ଏପରି ନିଷ୍ପତ୍ତି ଭୁଲ ଥିଲା । ତୁମ ଆଗରେ ମୁଁ ମୁହଁ ଖୋଲି ପାରୁନଥିଲି । ମୋତେ ଲାଗିଲା ମୋ ବାପାମାଆଙ୍କଠାରୁ ମୋତେ ଅଲଗା କରି ତୁମେ ଯେପରି ମୋ ସାଙ୍ଗରେ ପ୍ରତାରଣା କରିଛ । ଆଉ ତା'ପରେ ମୁଁ ନିଷ୍ପତ୍ତି ନେଲି ଅନ୍ୟ ନାରୀମାନଙ୍କ ସହ ସଂପର୍କ ରଖି ମୁଁ ମଧ୍ୟ ତୁମ ସାଙ୍ଗେ ପ୍ରତାରଣା କରିବି, ଆଉ ତାହା କଲି ମଧ୍ୟ । ମୁଁ ଜାଣିଥିଲି ମୋର ଏପରି କାର୍ଯ୍ୟକଳାପ ସହିତ ତୁମେ ପରିଚିତ ଅଛ । ତାହା ପରେ ମଧ୍ୟ ମୁଁ ଏଥିରୁ ଓହରୁ ନଥିଲି କାରଣ ପ୍ରତାରଣାର ପ୍ରତିଶୋଧ ମୋତେ ବାରମ୍ବାର ଅସ୍ତବ୍ୟସ୍ତ କରୁଥିଲା । କିନ୍ତୁ ମୁଁ ବୁଝି ପାରୁନଥିଲି ତୁମକୁ ପ୍ରତାରଣା ଦେବାକୁ ଯାଇ କେତେ

ଅସଂଖ୍ୟ ମଣିଷମାନଙ୍କୁ ପ୍ରତାରିତ କରୁଛି। ସତରେ କେତେ ଅନ୍ଧ ଥିଲି। ମୋ ଭିତରର ବିବେକ ମୋତେ ବି ସେତିକି ଚେତେଇ ଦେବାରେ ସଫଳ ହୋଇନଥିଲା। ମୋ ବିବେକ ଯାହା କରିପାରିନଥିଲା ମୋ ଠାରୁ ପ୍ରତାରିତ ହୋଇଥିବା ଶୁଭଦା କିନ୍ତୁ ତାହା କରି ଦେଖାଇଲା । ମୋତେ ସେ ସୂଚାଇ ଦେଇଛି ନାମ, ସମ୍ମାନ, ଧନ-ଦଉଲତ ସବୁ ଥାଇ ମଣିଷ ଯଦି ପରିବାରକୁ ଆଉ ନିଜ ପ୍ରେମକୁ ଅବହେଳା କରେ ତେବେ ମଣିଷ ଜନ୍ମ ଅକାରଣରେ ପାଇଛି ।' ବରୁନ୍ ମୁହଁରୁ କଥା ସରିଛି କି ନାଇ ହଠାତ୍ ପ୍ରଣତି କହିଉଠିଲା, 'ଶୁଭଦା ନାରୀ ନୁହେଁ ସେ ଜଣେ ଦେବୀ'। ବରୁନ୍‌ଠାରୁ ସବୁ ସତ୍ୟତା ଶୁଣିବା ବେଳକୁ ପ୍ରଣତି ମନରେ ମଧ୍ୟ ବରୁନ୍ ପ୍ରତି ଦୟା ଜାଗ୍ରତ ହୋଇସାରିଥିଲା। ସେ ପୁଣି କହିଉଠିଲା, 'ସେ ଖାଲି ତୁମକୁ ଠିକ୍ ରାସ୍ତାକୁ ଆଣିନାହାନ୍ତି ତୁମକୁ ମଧ୍ୟ ବାଧ୍ୟ କରିଛନ୍ତି ମୋତେ ନେଇ ତୁମ ମନରେ ଥିବା ଧାରଣାକୁ ମୋ ସାମ୍ନାରେ ଖୋଲି କହିବାକୁ । ତୁମେ ଏତିକି ମୁହଁ ଖୋଲି କହିନଥିଲେ ମୁଁ ମଧ୍ୟ ମୋର ଭୁଲ ଜାଣିପାରି ନଥାନ୍ତି ଯାହା ପାଇଁ କି ସାରା ଜୀବନ ମୁଁ ଅନ୍ଧାରରେ ରହିଥାନ୍ତି।'



ଶୁଭଦା ତା'ର ଅତୀତର ସମସ୍ତ ସ୍ମୃତିକୁ ମନ ଭିତରେ କବର ଦେଇ କାମରେ ଲାଗି ପଡ଼ିଥାଏ। ସକାଳୁ ଉଠି ନିତ୍ୟକର୍ମ ସାରି ଅଫିସ୍‌କୁ ବାହାରିବା ପୂର୍ବରୁ ପଡ଼ୋଶୀ ଘର କୁନି ଝିଅକୁ କୋଳେଇ ନେଇ ନିଜ ବାତ୍ସଲ୍ୟ ପ୍ରେମ ଆଙ୍କିଦିଏ ତା'ର ପୃଷ୍ଠ ଦେଶରେ। ଧିରେ ଧିରେ ପିଲାଟି ଶୁଭଦାକୁ ମାଆ ଡାକିବାରେ ଲାଗିଲା। ଏପରି ସମ୍ବୋଧନରେ ନାରୀତ୍ୱର ପୂର୍ଣ୍ଣତା ଉପଲବ୍‌ଧି କରେ ଶୁଭଦା।

ଘଣ୍ଟାରେ ଠିକ୍ ନଅଟା ପଇଞ୍ଚାଳିଶ୍ ହେଲାବେଳକୁ ସେ ତା' ଅଫିସ୍‌ର ତିନି ନମ୍ବର ଲିଫ୍ଟ ପାଖରେ ପହଞ୍ଚି ଯାଏ। ପୃଥିବୀଟା ସିନା ଓଲଟ ପାଲଟ ହୋଇଯିବ କିନ୍ତୁ ଶୁଭଦାର ସମୟାନୁବର୍ତ୍ତୀତାରେ କେବେ ଖିଲାଫ୍ ହୁଏ ନାହିଁ। ସେଇଠୁ ଲିଫ୍ଟ ଚଢ଼ି ସେ ଯାଇ ପହଞ୍ଚେ ଅଷ୍ଟମ ମହଲାରେ। ସେଇଠି ତା'ର ଅଫିସ୍। ଶୁଭଦାର ଅଫିସ୍‌ଥିବା ବିଲଡିଂରେ ଅନେକ ସରକାରୀ ତଥା ବେସରକାରୀ ଅଫିସ୍‌ମାନ

ଅଛି । କାର୍ଯ୍ୟରତ କର୍ମଚାରୀ ତଥା ଆଗନ୍ତୁକମାନଙ୍କର ଯିବା ଆସିବା ନିମନ୍ତେ ସେହି ବିଲଡିଂରେ ଚାରୋଟି ଲିଫ୍ଟ । ଶୁଭଦା ତା' ମଧ୍ୟରୁ ସବୁଠାରୁ କମ୍ ବ୍ୟବହୃତ ହେଉଥିବା ତିନି ନମ୍ବର ଲିଫ୍ଟରେ ଯିବା ଆସିବା କରିବାକୁ ପସନ୍ଦ କରେ ଏହାର କାରଣ ଦୁଇଟି । ପ୍ରଥତଃ ସେଥିରେ ଭିଡ କମ୍ ଥାଏ, ଦ୍ୱିତୀୟତଃ ସେ ଲିଫ୍ଟର ସାମ୍ନାରେ ଶୁଭଦା ଅଫିସ୍‌ର ପ୍ରବେଶ ଦ୍ୱାର । ଶୁଭଦା ନୂଆ ସହରରେ ଚଳପ୍ରଚଳ ହେଲା ଦିନୁ ବେଶୀ କାହା ସହ ମିଶିବାକୁ ପସନ୍ଦ କରେନି । ବରୁନ୍‌ର ପ୍ରତାରଣା ତାକୁ ଏପରି ରହିବାକୁ ବାଧ କରିଛି । ପ୍ରତାରଣା ମଣିଷକୁ ନିଃସଙ୍ଗ ଆଉ ଏକାକୀତ୍ୱ ଆଡକୁ ନିଷ୍ଠୁର ଭାବରେ ଘୋଷାରି ନିଏ। କେତେବେଳେ କେମିତି ରାସ୍ତାରେ ବା ଲିଫ୍ଟରେ ଯଦି କେହି ପରିଚିତ ଲୋକ ଦେଖା ହୋଇଗଲେ କେବଳ ହଁ ନାରେ ଉତ୍ତର ଦେବାକୁ ପସନ୍ଦ କରେ ସେ । ଦରକାର ହେଲେ ଅଫିସ୍‌ରେ ଅଫିସ୍ କର୍ମଚାରୀଙ୍କ ସହ ଆବଶ୍ୟକ ଅନୁସାରେ କଥା ହୁଏ । ନଚେତ୍ ଚୁପ୍ ରହିବାକୁ ଉଚିତ୍ ମନେ କରେ ତା'ରି ଅଫିସ୍‌ରେ ସୁମନ୍ତ ନାମରେ ଜଣେ ଯୁବକ କାମ କରନ୍ତି। ଶୁଭଦାକୁ ସେ କେତେଦିନ ହେଲା ନିରେଖି ନିରେଖି ଦେଖୁଥିଲେ ଏକଥା କିନ୍ତୁ ଶୁଭଦା ଜାଣି ନଥିଲା ।

ଶୁଭଦାର ସମୟାନୁବର୍ତ୍ତୀତା ତାକୁ ଅଫିସ୍‌ରେ ସମସ୍ତଙ୍କ ସାମ୍ନାରେ ପ୍ରିୟ ଭାଜନ କରାଏ, ଉପରିସ୍ଥ ହାକିମଙ୍କ ନାଲି ଆଖି କେବେ ତାକୁ ଦେଖିବାକୁ ପଡ଼ିନାହିଁ। ତା'ର ସରଳ ଓ ଶାନ୍ତ ବ୍ୟବହାର ଯୋଗୁଁ ତା' ସାଙ୍ଗରେ କେବେ କାହାର ଅପଡ ହେବାର ମଧ୍ୟ ସମ୍ଭାବନା ନାହିଁ। ଅଧିକାଂଶ ସମୟ ଚୁପ୍ ହୋଇ ରହୁଥିବା ଶୁଭଦାର ବ୍ୟବହାର ଓ କାର୍ଯ୍ୟ ଦକ୍ଷତା ସେଇ ଅଫିସ୍‌ର ସତେ ଯେମିତି ମୁଖ୍ୟ ଆକର୍ଷଣ। ସେଥିପାଇଁ ହୁଏତ ଚାକିରୀ କରିବାର ମାତ୍ର ତିନିବର୍ଷ ଭିତରେ ତାକୁ ପ୍ରମୋଶନ ମିଳିଯାଏ।

ଜୀବନକୁ ମନ ଭରି ଉପଭୋଗ କରିବା ପାଇଁ କମ୍ପାନୀ ତା' ପାଇଁ ସବୁ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦେଇଛି। ଆକର୍ଷଣୀୟ ବେତନ, ଫ୍ଲାଟ୍, ଭତ୍ତା ଆଉ ବର୍ଷକୁ ତିନି ଚାରିଥର ଭ୍ରମଣ ସୁବିଧା। ଶୁଭଦା ଯେତେବେଳେ ବାହାରକୁ ଭ୍ରମଣ ପାଇଁ ଯାଏ ସେହି ପଡ଼ିଶା ଘର କୁନି ଝିଅ ଏବଂ ନିଜର ସେହି ବୀଣାବାଦ୍ୟକୁ ସାଥିରେ ନେଇଯାଏ। କୁନି ଝିଅଟି

ଭିତରେ ନିଜର ଭବିଷ୍ୟତ ଏବଂ ବର୍ତ୍ତମାନକୁ ହଜାଇ ଦେଉଥାଏ ଏବଂ ବୀଣାବାଦନରେ ନିଜ ଅତୀତର ସ୍ମୃତିକୁ ରୋମନ୍ଥନ କରି ସେ ରୋମାଞ୍ଚିତ ହୁଏ ଏବଂ ବଞ୍ଚିବାର ରାହା ପାଏ। କେବେ କେମିତି ମାନସିକ ବୋଝରୁ ହାଲୁକା ହେବା ପାଇଁ ଗୀତ ବୋଲୁଥିବା ଶୁଭଦା ଷ୍ଟେଜ୍ ଶୋ କରି ଅନାଥ ଓ ଗରୀବ ପିଲାମାନଙ୍କୁ ସାହାଯ୍ୟ କରେ । ବରୁନ୍ ସହିତ ଶେଷ ଥର ତା'ର ସାକ୍ଷାତ ହୋଇଥିଲା ତିନି ବର୍ଷ ତଳେ । ଏତେ ଦିନ ଧରି ସେ ବଞ୍ଚିଆସୁଛି ନିଜ ସ୍ମୃତିକୁ ନେଇ। ଆବଶ୍ୟକ ମନେ କରିନି ଆଉ କାହାର ଉପସ୍ଥିତି। ବରୁନ୍‌ର ଉପସ୍ଥିତିକୁ ସେ ପ୍ରତି ମୁହୂର୍ତ୍ତରେ ଅନୁଭବ କରିଛି ଆଉ ମନଭରି ଭିଜିଛି ତାର ସାନ୍ନିଧ୍ୟରେ। ଏମିତି ବି ହେଇଛି ବରୁନ୍‌ର ଭାବନା ତାକୁ ଯନ୍ତ୍ରଣାରେ ଛଟପଟ କରିବାକୁ ବାଧ୍ୟ କରିଛି । ତଥାପି ଅତୀତ ଆଉ ବର୍ତ୍ତମାନର ହିସାବ ନିକାଶରେ ସେ ବଞ୍ଚିବାର ସାହାସ ଯୁଟାଇଛି। ଏଇମିତି ଦିନେ ଅତୀତ ଆଉ ବର୍ତ୍ତମାନର ହିସାବ କରୁ କରୁ ଅଣନିଶ୍ୱାସୀ ହୋଇଗଲା ସେ । ଜୀବନରେ କେବେ କାହାର ଯନ୍ତ୍ରଣାର କାରଣ ହୋଇନି, କେବେ କାହାକୁ ପ୍ରତାରିତ କରିବାକୁ ଚେଷ୍ଟା କରିନି ଅଥଚ ଭଗବାନ ତାକୁ ପ୍ରତି ମୁହୂର୍ତ୍ତରେ ପ୍ରତାରଣାର ଯନ୍ତ୍ରଣାରେ ଛଟପଟ କରାଉଛନ୍ତି । ମାନସିକ ସ୍ତରରେ ଯେତେବେଳେ ସେ ହାଲୁକା ଅନୁଭବ କରେ ହଠାତ୍ ତା' ଭାବନା ଭିତରକୁ ପଶି ଆସନ୍ତି ସେହିସବୁ କାଳ୍ପନିକ ଚରିତ୍ରମାନେ। କଳ୍ପନାରେ ତାକୁ ଉବୁଟୁବୁ କରାନ୍ତି, ମନଭରି ଭିଜାନ୍ତି, ପୁଣି ସୁଯୋଗ ପାଇଲା କ୍ଷଣି ଅପସରି ଯାଆନ୍ତି ତା'ମାନସ ପଟରୁ।

ନିଜ ଝିଅ ସ୍ୱାମୀ, ପରିବାର ଆଉ ପ୍ରେମକୁ ମନ ଭରି ଉପଭୋଗ ନ କରି ଥିବାରୁ ଭିଜା ଭିଜା ଆଖିରେ ତାକୁ ବଞ୍ଚିବାକୁ ହୁଏ। ତଥାପି କେବେ ବି ଯନ୍ତ୍ରଣାର ଚାପରେ କାହାକୁ ଅଭିଶାପ ଦେବାର ଭୁଲ କରିନାହିଁ। ସେଦିନ କିନ୍ତୁ ଅସହାୟତାର ବୋଝରେ ସେ ଅଣନିଶ୍ୱାସୀ ହୋଇଯାଇଥିଲା । ନିଷ୍ପତ୍ତି ନେଲା ଆଗାମୀ ଛୁଟିରେ ସେ କେଉଁଆଡେ ଯାଇ ଟିକେ ବୁଲିଆସିବ । ଠିକ୍ ଏହା ଭାବିଛି କି ନା କାଶ୍ମୀରର ଏକ ସଂସ୍ଥା ଶୁଭଦାକୁ ନିମନ୍ତ୍ରଣ କରିଛନ୍ତି ସେମାନେ ଅନୁଷ୍ଠିତ କରିଥିବା ଏକ ସର୍ବଭାରତୀୟ ସଙ୍ଗୀତ

କାର୍ଯ୍ୟକ୍ରମକୁ । ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ଅନାଥ ଶିଶୁଙ୍କ ପାଇଁ ଅର୍ଥ ସଂଗ୍ରହ । ଯେଉଁ ଅର୍ଥ ସେହି ଅନାଥ ପିଲାମାନଙ୍କର ଉଚ୍ଚ ଶିକ୍ଷା ପାଇଁ ପ୍ରଦାନ କରାଯାଇଥାଏ । ଖୁବ୍ ଆନନ୍ଦିତ ହୁଏ ଶୁଭଦା। ନିଜ ଜୀବନକୁ ସାର୍ଥକ ଅନୁଭବ କଲା । ଆଜି ତା'ର ସଙ୍ଗୀତ ଏହି ଅନାଥ ପିଲାଙ୍କ ଶିକ୍ଷା କ୍ଷେତ୍ରରେ ଲାଗିପାରିବା ଦେଖି ନିଜକୁ ଗୌରବାନ୍ୱିତ ମନେ କଲା । ନିର୍ଦ୍ଦିଷ୍ଟ ଦିନ ଆସିଲା । ସାଥିରେ ପଡିଶା ଘରର ସେହି କୁନି ଝିଅକୁ ନେଇ ସେ ବାହାରିଗଲା କାଶ୍ମୀର । ସାଥୀରେ ନିଜର ବୀଣାବାଦ୍ୟକୁ ନେବାକୁ ଭୁଲି ନଥିଲା । ଜୀବନର ସଜ୍ଞା ଯାହା ହେଉନା କାହିଁକି, ଜୀବନର ପୂର୍ଣ୍ଣତା ଯେପରି ଆସୁନା କାହିଁକି ସେସବୁର କୌଣସି ମାନେ ରହୁନଥିଲା ଶୁଭଦା ପାଖରେ । ଜୀବନକୁ ନେଇ ସଂଜ୍ଞା ତା'ର ଭିନ୍ନ ଥିଲା । ଜୀବନରେ ପୂର୍ଣ୍ଣତା ଆଣିବାର ଉପାୟ ତା'ପାଖରେ ଅଲଗା ଥିଲା । ଏଇଥିପାଇଁ ଯେ ଜୀବନକୁ ସେ ଯେପରି ଚିହ୍ନିଥିଲା ଜୀବନକୁ ସେ ଯେଉଁଳି ଉପଭୋଗ କରିଥିଲା ସେମିତି ହୁଏତ ଜୀବନ କାହାକୁ ଭେଟିନି କି ମିଳିନି ।

ପୂର୍ଣ୍ଣତାକୁ କିଏ କେମିତି ବୁଝୁ ବା ନବୁଝୁ ଶୁଭଦା କିନ୍ତୁ ବୁଝିଛି ତା'ରି ଢ଼ଙ୍ଗରେ। ବୁଝିଛି ବୋଲି ତ ଏତେ ସବୁ ଅଘଟଣ ପରେ ବି ସାଧାରଣ ଜୀବନଟିଏ ଅତିବାହିତ କରିପାରୁଛି ନିଜ ଇଚ୍ଛାରେ । ହୋଇପାରେ ସେ ସ୍ୱପ୍ନ ଅନ୍ୟ ପାଇଁ ଅବାସ୍ତବ, ଅକାରଣ କିନ୍ତୁ ତା'ପାଇଁ ତ ସଂପୂର୍ଣ୍ଣ ବାସ୍ତବ ଆଉ ସେଥିରେ ସେ ଖାଲି ଜୀବନକୁ ତ ଦେଖୁନି ଜୀବନକୁ ବଞ୍ଚୁଛି ମଧ। ତା' ଭାବନାର ପରିଧି ଏତେ ପରିବ୍ୟାପ୍ତ ହୋଇଯାଇଛି ଯେ ଅନ୍ୟର ବାସ୍ତବତା ତା' ଭିତରେ ସ୍ଥାନ ନେବାକୁ ଯଥେଷ୍ଟ । ବେଳେ ବେଳେ ନିଶିଥ ରାତିରେ ଅଜଣା କେଉଁ ବନଫୁଲର ମହକ ପରି ତା' ମାନସପଟକୁ ଅଥୟ କରିଦିଏ ଜଣେ ନାରୀର ସ୍ୱାଭାବିକ କାମନା। ଅନ୍ତସଃଲୀଳା ଫଲ୍‌ଗୁର ଜଳଧାର ପରି ତା' ଭିତରୁ ଉଚ୍ଛୁଳି ଆସେ ଗୋଟେ ସାଗରମୁଖୀ ମମତ୍ୱବୋଧର ନିର୍ଝରିଣୀ। ସେଇ କ୍ଷଣିକରେ ସ୍ୱାମୀଘର, ସଂସାର, ପିଲାମାନଙ୍କ କଳରବ ତାକୁ ଯାବୁଡ଼ି ଧରେ ଖୁବ୍ ଆତ୍ମୀୟ ଭାବେ। ତାକୁ ଲାଗେ ସତେ ଯେମିତି ସେ କେଉଁ ଏକ

ଦୋଳାୟମାନ ସବାରୀରେ ବସିଛି । ଶୁଭ୍ର ମୁକୁଟର ଛନ୍ଦାୟିତ ଫୁଲ ସନ୍ଧିରୁ ବରୁନ୍‌ର ଗୋରା ମୁହଁ ଖୁବ୍ ଉଜ୍ଜଳ ଦିଶେ । ବାସର ରାତିର ଦ୍ୱିତୀୟ ପ୍ରହର ଉପନୀତ ହୁଏ । ସପ୍ତରଙ୍ଗ ଫୁଲରେ ସୁଶୋଭିତ ବାସର ରାତିର ଶଯ୍ୟା ଏବଂ ତା' ଉପରେ ଓଢ଼ଣା ଟାଣି ବସିଛି ଶୁଭଦା । କିଛି ସମୟ ପରେ ବରୁନ୍‌ର ପାଦ ଶବ୍ଦ ଶୁଭେ ଶୁଭଦାକୁ । ବରୁନ୍ ଦେହର ବାସ୍ନା ତା'ର ନିକଟତର ହେବାର ସେ ଅନୁଭବ କରେ । ଭୟରେ କମ୍ପି ଉଠେ ତାର ସଂପୂର୍ଣ୍ଣ ଶରୀର । କିଛି ସମୟ ପରେ ତା' ମୁଣ୍ଡରୁ ଉଠିଯିବ ଓଢ଼ଣୀ । ବରୁନର ସ୍ପର୍ଶରେ ସମଗ୍ର ଶରୀର ତା'ର ଶିହରି ଉଠିବ । ଏତେ ଦିନ ଧରି ସାଇତି ରଖିଥିବା ଓଠର ନାଲି ଏବଂ ଗୋଲାପୀ ଗାଲର ଗୋଲାପୀପଣକୁ ହରଣ କରିନେବ ତା'ର ପ୍ରେମ ।

କୁନି ଝିଅର ଡାକରେ ଶୁଭଦା ଓହ୍ଲାଇ ଆସିଲା ବାସ୍ତବତାର ପାହାଚକୁ । ସତରେ କଳ୍ପନାରେ କେତେ ରୋମାଞ୍ଚିତ ହୋଇପାରେ ମଣିଷ । କୁନି ଝିଅ ଯିଦି କଲା ବାହାରକୁ ବୁଲି ଯିବା ପାଇଁ । କାଶ୍ମୀରରେ ପହଞ୍ଚିବାର ଚାରି ପାଞ୍ଚ ଘଣ୍ଟା ହୋଇଗଲାଣି ଶୁଭଦା କିନ୍ତୁ ସେଇ କୁନିଝିଅକୁ ନେଇ ହୋଟେଲ ରୁମ୍ ଭିତରେ ପଶିଛି ଯେ ବାହାରକୁ ବାହାରିବାର ନା ଧରୁନି । ଝିଅ କଥା ଭାଙ୍ଗି ନପାରି ଶୁଭଦା ବାହାରି ଆସିଲା ବାହାରକୁ । ସମସ୍ତେ କୁହନ୍ତି ଭାରତର ସ୍ୱର୍ଗ କାଶ୍ମୀର ବୋଲି ଶୁଭଦା ମଧ୍ୟ ଠିକ୍ ସେୟା ଅନୁଭବ କଲା । ସତେ ଅବା ପ୍ରକୃତି ସବୁଜ ଚାଦରରେ ଘୋଡାଇ ଦେଇଛି ତା'ର ସଂପୂର୍ଣ୍ଣ ଶରୀରକୁ । ନାଲି ଓଢ଼ଣା ପରି ଶୁଭ୍ର ଆକାଶ ଘୋଡାଇ ଦେଇଛି ପାହାଡକୁ । ପ୍ରଥମ ପ୍ରେମର ଲାଜ ସତେ ଅବା ବାରି ହୋଇଯାଉଛି ସେଠାରେ । ପାହାଡ ଦେଶରେ ପାଦଚଲା ରାସ୍ତା ନୂଆ ବୋହୂର ସିନ୍ଥି ପରି ଚକ୍ ଚକ୍ କରୁଛି । ସତେ ଅବା ପାହାଡ ଅପେକ୍ଷା କରିଛି ସାନ୍ନିଧ ପାଇଁ । ଠିକ୍ ଯେମିତି ଶୁଭଦା ବାସର ରାତିରେ ଚାହିଁ ବସିଥିଲା ବରୁନ୍‌କୁ । କିନ୍ତୁ ସତରେ କ'ଣ ଏ ସବୁଜ ପାହାଡର ଆଶା ପୂରଣ ହେବ ? ଆଉ କିଛି ସମୟ ଗଲେ ଗୋଧୂଳି ଆସିବ ସୂରୁଜ ପାହାଡ ପାଖକୁ ଚାଲି ଆସି ନୂଆ ବୋହୂର ସିନ୍ଦୂର ପରି ସଜ ହୋଇଯିବ ଯେ ପାହାଡର ପ୍ରେୟସ ଆପଣାଛାଏଁ ଆସି ଠିଆ ହେବ ରାତି ଶେଷ ହେବା ଯାଏଁ ।

ପୁଣି ସକାଳ ହେବ ଚଢ଼େଇଙ୍କ ଖ୍ୱଚିରି ମିଚିରି ହେବା ଆଗରୁ ସ୍ୱାମୀ ତା'ର ଉଠି ଚାଲିଯାଇଥିବ କେଉଁ ଆଡକୁ । ଏଥିରେ ସେ ପାହାଡଟା ଅଭିମାନ କରେ କି ନାଇ କେଜାଣି କିନ୍ତୁ ଶୁଭଦା ଭାବୁଥିଲା ସେ ଯଦି ପାହାଡ ହୋଇଥାନ୍ତା ନିଶ୍ଚୟ ଅଭିମାନ କରିଥାନ୍ତା । ସୃଷ୍ଟିକର୍ତ୍ତାଙ୍କ ଆଗରେ ନିଜ ଉପରେ ହେଉଥିବା ପ୍ରତାରଣାକୁ ନେଇ ଅଭିଯୋଗ କରିଥାନ୍ତା । ହୁଏତ ସୃଷ୍ଟିକର୍ତ୍ତା ତାକୁ ଧୈର୍ଯ୍ୟ ରଖିବାକୁ ଉପଦେଶ ଦେଇ କହିଥାନ୍ତେ ପାହାଡର ଏମିତି ଅପେକ୍ଷା ଆଉ ଦିନ ରାତିର ଆଗ ପଛ ଖେଳ ଏସବୁ ପ୍ରକୃତି ପ୍ରଦତ୍ତ। କିନ୍ତୁ ଶୁଭଦା ସହିତ ଯାହା ଘଟିଗଲା ବା ଯାହା ଘଟୁଛି ତାହା ତ ପ୍ରକୃତି ପ୍ରଦତ୍ତ ନଥିଲା । ସେ ତ ପ୍ରେମକୁ ବିଶ୍ୱାସ କରିଥିଲା ଆଉ ସମ୍ମାନ କରିଥିଲା ମଧ୍ୟ। ହେଲେ ସେ ପାଇଲା କ'ଣ ? ପ୍ରତାରଣା ଆଉ ଗୋଟେ ଅନିଶ୍ଚିତ ଭବିଷ୍ୟତ। ଏସବୁକୁ ସାଥି କରି ଆଜିର ସମାଜରେ ଗୋଟିଏ ଝିଅ ପାଇଁ କ'ଣ ବଞ୍ଚିବା ସମ୍ଭବ ? ଯଦି ଅସମ୍ଭବ ତେବେ କେଉଁ ଉଦ୍ଦେଶ୍ୟରେ ସେ ଆଜି ଭୋଗ କରୁଛି ଏଭଳି ଏକ ଜୀବନ ? ଆଉ ଯଦି ସମ୍ଭବ ତେବେ ବାରମ୍ବାର ସେ ଆଘାତର ଯନ୍ତ୍ରଣା କାହିଁକି ତାକୁ ଛଟପଟ କରୁଛି । ଖୁବ ଅସହାୟ ହୋଇ ଶୁଭଦା ଚାହିଁଥାଏ ପାଖ ପାହାଡକୁ; ହଠାତ୍ ପଛରୁ କିଏ ଡାକିଲା, 'ଶୁଭଦା..'

ପଛକୁ ଚାହିଁ ହତ୍‌ବାକ୍ ହୋଇଗଲା ସେ। ସତେ ଅବା ପୃଥିବୀଟା ତା' ପାଦ ତଳୁ ଖସିଯାଉଛି । ଅସହାୟପଣ ତାକୁ ଆହୁରୀ ଜାବୁଡ଼ି ଧରୁଛି । ଶୁଭଦା ଯୋର୍‌ରେ ଜାବୁଡ଼ି ଧରିଲା ସେଇ କୁନି ଝିଅର ହାତକୁ । ଶୁଭଦା ସାମ୍ନାରେ ଠିଆ ହୋଇଥିଲା ବରୁନ୍ । ସ୍ୱପ୍ନରେ ସୁଦ୍ଧା ଭାବିନଥିଲା ଶୁଭଦା ବରୁନ୍ ସହିତ ତା'ର ଏଭଳି ସାକ୍ଷାତ ହେବ ବୋଲି ।

'ଏ କ'ଣ ତୁମ ଝିଅ ? ବୋଧେ ପୂରା ପରିବାର ସାଙ୍ଗରେ ଆସିଛ ?' ଏମିତି ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଥାଏ ବରୁନ୍ । ଶୁଭଦା କିନ୍ତୁ ସେଇମିତି ଚୁପ୍ ହୋଇ ଠିଆ ହୋଇଥିଲା । ବରୁନ ତା'ର ଭୁଲ୍ ପାଇଁ କ୍ଷମା ମାଗି ନେଲା ଶୁଭଦାଠାରୁ । ଶୁଭଦା କିଛି ବୁଝିପାରୁନଥିଲା କ'ଣ ଘଟୁଛି।

ପ୍ରକୃତିସ୍ଥ ହୋଇ ଉତ୍ତର ଦେଲା ଆଉ କ'ଣ ରଖିଛ ଯେ କ୍ଷମା ମାଗୁଛ । ହୁଏତ କାହା ଜୀବନ ସାଙ୍ଗରେ ଖେଳିବା ତୁମର ଅଭ୍ୟାସ ହୋଇଥାଇପାରେ

କିନ୍ତୁ ସେପରି କରିବାରେ ମୁଁ କେବଳ ଯନ୍ତ୍ରଣା ହିଁ ଯନ୍ତ୍ରଣା ପାଇଛି। ମୁଁ ତୁମ ଭଳି ପ୍ରେମକୁ ନେଇ ଅଭିନୟ କରିପାରିବି ନାହିଁ। ମୋ ପାଇଁ ପ୍ରେମ ଶାସ୍ୱତ ଆଉ ପବିତ୍ର। ସେହି ପବିତ୍ର ମନ ଆଉ ହୃଦୟ ନେଇ ମୁଁ ଦିନେ ତୁମକୁ ଗ୍ରହଣ କରିଥିଲି। ଆଉ ଏତେ ଶୀଘ୍ର ସେହି ପ୍ରେମକୁ ହୃଦୟରୁ ପୋଛି ଦେବା ମୋ ପକ୍ଷରେ ସମ୍ଭବ ନୁହେଁ । ଏ ଝିଅ ମୋର ନୁହେଁ ଏକା ହୋଇଯିବି ବୋଲି ପଡିଶା ଘରର ଝିଅକୁ ସାଙ୍ଗରେ ନେଇ ଆସିଛି । ଝିଅ କଥା ତ ଦୂରେ ଥାଉ ଦ୍ୱିତୀୟ ପୁରୁଷ କଥା ଭାବିବା ମୋ ପାଇଁ ଅସମ୍ଭବ।'

ଶୁଭଦାଠାରୁ ଏତକ ଶୁଣି ବରୁନ୍ ନିଶ୍ଚିତ ହୋଇଗଲା ଯେ ଶୁଭଦା ଏଯାଏଁ ଅବିବାହିତ । ତା'ପରି ଏକ ଧୋକାବାଜ୍ ପୁରୁଷକୁ ପ୍ରେମ କରି ଶୁଭଦାକୁ ଆଜି ଏକାଏକା ରହିବାକୁ ପଡିଲା। ଏପରି ଭାବନା ବରୁନ୍‌କୁ ଅସ୍ତବ୍ୟସ୍ତ କଲା । ତାରି ପ୍ରେମକୁ ଭରଷା କରି ଶୁଭଦା ଆଜି ନିଜର ସଂସାରଟିଏ କରିପାରିଲାନାହିଁ। ନ'ମାସ ଗର୍ଭଧାରଣର ମୁର୍ହୂଃର୍ମୁହୂଃ ମନୋଜ୍ଞ ଅନୁଭବଠାରୁ ଦୂରେଇ ଯାଇ ସେ ଆଜି ପଡୋଶୀର ଝିଅ ସାଙ୍ଗରେ ବାତ୍ସଲ୍ୟ ପ୍ରେମକୁ ବାଣ୍ଟୁଛି । ଏସବୁ ଭାବନା ବରୁନ୍‌କୁ ତା' ନିଜ ସାମ୍ନାରେ ଛୋଟ କରିସାରିଥିଲା । ସତରେ ସେ ଏପରି କେତେ ଝିଅଙ୍କ ଜୀବନ ନଷ୍ଟ କରିଛି କିନ୍ତୁ ନିଜକୁ ଏଭଳି ଦୋଷୀ କେଉଁଠାରେ ଅନୁଭବ କରିନାହିଁ । ସେ କେବେ ବି ଆଶା କରି ନଥିଲା ଶୁଭଦା ସହିତ ତା'ର ଏପରି ଅଚାନକ ସାକ୍ଷାତ ହେବ ବୋଲି। ବରୁନ୍ ପୁଣି ଥରେ ନିଜର କୁକର୍ମ ପାଇଁ ଶୁଭଦାକୁ କ୍ଷମା ମାଗିନେଲା ।

'ତୁମେ ଯଦି ତୁମର ଭୁଲ ସ୍ୱୀକାର କରୁଛ ତେବେ ଏହା ତ ଖୁବ୍ ଖୁସୀର କଥା । ମୁଁ ବା ତୁମକୁ କ୍ଷମା ଦେବାକୁ କିଏ କିନ୍ତୁ ମନେ ରଖ ଏପରି ଛଳନା ଆଉ କାହା ସାଙ୍ଗରେ କରିବ ନାହିଁ। ତୁମ ସାଙ୍ଗରେ ଶେଷ ଥର ଭେଟିବା ପରେ ମୁଁ ତୁମ ଉଦ୍ଦେଶ୍ୟରେ ଚିଠି ଖଣ୍ଡେ ଲେଖିଥିଲି, ପାଇଛ ବୋଧହୁଏ ?'

ବରୁନ୍ ଉତ୍ତର ଦେଲା, 'ହଁ ପାଇଛି'। ତୁମର ସେ ଚିଠି ତ ମୋତେ ପୁନଃର୍ଜନ୍ମ ଦେଇଛି । ଭୁଲ୍ ଠିକ୍ ମଧ୍ୟରେ ତଫାତ୍ ନଜାଣି ମୁଁ ମରୀଚିକା ପଛରେ ଧାଇଁ ଚାଲିଥିଲି। ତୁମର ସେ ଚିଠି ମୋ ଜୀବନର ସତ୍ୟତାକୁ ମୋତେ

ଦେଖାଇବାରେ ସାହାଯ୍ୟ କରିଛି । ତୁମେ ବିଶ୍ୱାସ କରିବନି ଶୁଭଦା ସେ ଚିଠି ପଢ଼ିଲା ପରେ ମୁଁ ପ୍ରତି ମୁହୂର୍ତ୍ତରେ ତୁମକୁ ଖୋଜିଛି । ତୁମର ଖୋଜ୍ ଖବର କଉଠୁ ବି ପାଇଲି ନାହିଁ । ପ୍ରଣତି ବି ତୁମର ଖବର ନେବାରେ ବହୁତ ଚେଷ୍ଟା କରି ଶେଷରେ ଅସଫଳ ହେଲା ।

'ତୁମେ କ'ଣ ଏକା ଆସିଛ ବରୁନ୍ ?' କଥାର ମୋଡ ବଦଳାଇ ଶୁଭଦା ପ୍ରଶ୍ନ କଲା ।

'ନା, ସପରିବାର ଆସିଛି । ଏହି ପାଖ ଲଜ୍‌ରେ ପ୍ରଣତି ଆଉ ପିଲାମାନେ ଅଛନ୍ତି । ଲଜ୍‌ର ବାଲ୍‌କୋନିରୁ ତୁମକୁ ଦେଖି ମୁଁ ସନ୍ଦେହରେ ତୁମ ପାଖକୁ ଚାଲି ଆସିଲି । ଆଉ ପାଖକୁ ଆସି ଯେତେବେଳେ ଜାଣିଲି ଯାହାକୁ କ୍ଷମା ମାଗିବା ପାଇଁ ମୁଁ ଏତେ ବର୍ଷ ହେଲା ଖୋଜିବୁଲୁଛି ସେ ଯେ ମୋ ଆଖି ସାମ୍‌ନାରେ ମୋର ବିଶ୍ୱାସ ହେଲାନାହିଁ । ତୁମେ ମୋତେ କ୍ଷମା କରିଦେଇଥିବାରୁ ମୁଁ ତୁମ ପ୍ରତି କୃତଜ୍ଞ ଶୁଭଦା ।'

'ଖାଲି ବରୁନ୍‌କୁ କ୍ଷମା କରିଦେଲେ ହେବନି ଶୁଭଦା ମୋତେ ମଧ୍ୟ କ୍ଷମା କରିବାକୁ ପଡିବ ।' ପ୍ରଣତି ସେଠାରେ ପହଞ୍ଚୁ ପହଞ୍ଚୁ କହି ଉଠିଲା ।

ଏହା କହି ସେ ଶୁଭଦାର ପାଦ ଧୂଳି ନିମନ୍ତେ ଉଦ୍ୟତ ହେବାର ଦେଖି ଶୁଭଦା ତାଙ୍କୁ ବାରଣ କଲା, 'ନା, ନା ସେପରି କରନା ପ୍ରଣତି ମୋତେ ପାପ ଲାଗିବ । ଏମିତି ତ ବରୁନ୍ ବିଷୟରେ ମୁଁ ସବୁ କିଛି ନଜାଣି ତୁମ ଅଧିକାରରେ ଭାଗ ବସିବାକୁ ଯାଇ ପାପ ଅର୍ଜି ସାରିଛି । ଆଉ ପାପ ମୁଣ୍ଡାଇବାର ସାହସ ମୋ ପାଖରେ ନାହିଁ ।'

'ନା, ନା ତୁମେ ସଂପୂର୍ଣ୍ଣ ଭୁଲ କହୁଛ ଶୁଭଦା । ତୁମେ ହିଁ ଦେଇଛ ପୁନଃ ଜୀବନ ମୋ ପରିବାରକୁ ଆଉ ବରୁନ୍‌କୁ । ମୋ ବିବାହିତ ଜୀବନର ଏତେ ଲମ୍ବା ସମୟ ଭିତରେ ଯାହା କରିପାରିନଥିଲି ତାହା ତୁମେ ତାଙ୍କ ପାଖରେ ନଥାଇ କରିଦେଇ ପାରିଲ । ସତରେ ତୁମେ ମାନବୀ ନୁହେଁ ଦେବୀ । ମୁଁ ତ କହିବି ବରୁନ୍ ପାଇଁ ତୁମେ ହିଁ ହକ୍‌ଦାର ମୁଁ ତାଙ୍କୁ ବିବାହ କରିଥାଇ ପାରେ ତାଙ୍କ ସନ୍ତାନମାନଙ୍କୁ ନଅମାସ ପେଟରେ ଧରି ଦୁନିଆକୁ ଆଣି

ଥାଇପାରେ କିନ୍ତୁ ବରୁଣ୍‌କୁ ନୂଆ ରୂପରେ ଆଉ ନୂଆ ଗୁଣରେ ଦୁନିଆକୁ ଆଣିବା ପଛରେ ତୁମର ହିଁ ହାତ ଅଛି । ଭାରତୀୟ ହିନ୍ଦୁ ସମାଜର ରୀତିନିତିକୁ ପଛ କରି ତୁମେ ପ୍ରେମିକର ସ୍ମୃତିରେ ସାରା ଜୀବନ ବଞ୍ଚିବାର ନିଷ୍ପତ୍ତି ନେଇଗଲ । ଏହା ନିଷ୍ପତ୍ତି ନୁହେଁ ତ ପ୍ରେମ ପାଇଁ ଯେପରି ବଜ୍ର ଶପଥ । ତୁମେ ବରୁଣ୍‌କୁ ମନ ଭରି ଭଲ ପାଉଥିଲ ଏବେ ପାଉଛ ମଧ୍ୟ । ତୁମେ କଳ୍ପନାରେ ତାଙ୍କୁ ଖାଲି ବିବାହ ତ କରିନ ତାଙ୍କ ସନ୍ତାନର ମାଆ ମଧ୍ୟ ହୋଇଛ । ତୁମ ପରିବାରରେ ହସଲୁହ, ମାନଅଭିମାନ ସବୁକିଛି ଅଛି ଅନ୍ୟ ପରିବାର ଭଳି କିନ୍ତୁ ଏସବୁ କେବଳ ଅନୁଭବର ପରିଧି ମଧ୍ୟରେ ସୀମିତ ବାସ୍ତବତାର ରୂପ ଦେବାକୁ କେବେ ଚେଷ୍ଟା କରିନାହଁ ତୁମେ। ଏହାର କାରଣ କେବଳ ମୁଁ ଶୁଭଦା । ମୁଁ ଜାଣିଛି ପ୍ରେମର ଅଭିଶାପକୁ ନିଜ ମୁଣ୍ଡରେ ମୁଣ୍ଡେଇବାକୁ ଯାଇ ଅଭିଶପ୍ତା ସିନା ପାଲଟି ଗଲ କିନ୍ତୁ ମୋ ସଂସାର ଭାଙ୍ଗିବାର ଚିନ୍ତା କେବେ ବି କରିଲ ନାହିଁ । ତୁମ ପ୍ରେମ ତାଙ୍କୁ ବଦଳାଇ ଦେଲା । ସେ ହଠାତ୍ ଯେପରି ପୁନଃର୍ଜନ୍ମ ଲାଭ କଲେ । ତୁମର ପ୍ରେମ ତ୍ୟାଗ ଆଉ ତାଙ୍କର ପ୍ରତାରଣା କଥା ସେ ମୋ ଆଗରେ ବହୁତ ଥର ସେୟାର କରିଛନ୍ତି । ତୁମେ ମୋତେ ସ୍ୱାର୍ଥପର କହିପାର ଶୁଭଦା ତୁମର ତ୍ୟାଗର କାଉଁରୀ ଛୁଆଁରେ ହୁଏତ ସେ ବଦଳିଗଲେ ତା' ସହିତ ତାଙ୍କୁ ନେଇ ମୋ ଭାବନା ସବୁ । ଆଉ ସେ ପରିବର୍ତ୍ତନ ଭିତରେ ମୁଁ ବି ଭୁଲି ଗଲି ତୁମର ତ୍ୟାଗ ଓ ସମର୍ପଣର କଥାସବୁ। ତଥାପି ତୁମକୁ ସହସ୍ର ଥର ଧନ୍ୟବାଦ ଦେବି ତୁମର ଏପରି ଆଚରଣ ପାଇଁ । ତୁମେ ତ କହୁଛ ତୁମେ ଅଜାଣତରେ ମୋ ଅଧିକାରରେ ଭାଗ ବାଣ୍ଟିବାକୁ ବସିଥିଲ । ମୁଁ କିନ୍ତୁ ସବୁ ଜାଣିଶୁଣି ତୁମ ଅଧିକାରରୁ ତୁମକୁ ବଞ୍ଚିତ କରାଇଛି । ମୋ ସିନ୍ଦୁର ଲାଲ ଟହ ଟହ ରଙ୍ଗ ହୁଏତ କହୁଥିବ ମୁଁ ବିବାହିତା । ମୋର ସ୍ୱାମୀ ଅଛି ସଂସାର ଅଛି । ମୁଁ କିନ୍ତୁ ଜଣେ ଅଭିଶପ୍ତା ଠିକ୍ ତୁମପରି । ମୁଁ ତୁମ ବିଶ୍ୱାସରେ ବିଷ ଦେଇଛି ଶୁଭଦା । ନାରୀ ହୋଇ ଆଉ ଗୋଟିଏ ନାରୀକୁ ପ୍ରତାରିତ କରିଛି । ମଥାର ସିନ୍ଦୁରଠାରୁ ହୃଦୟରେ ସ୍ଥାନ ପାଇଥିବା ମଣିଷଟା ଯେ କେତେ ନିଜର ଆଉ ପାଖର ତାହା ତୁମେ ପ୍ରମାଣିତ କରିଛ ବାରମ୍ବାର ।' ଶୁଭଦା ପ୍ରଣତିର କାନ୍ଧରେ ହାତ ଥାପୁଡେଇ ସେମାନଙ୍କ ଭବିଷ୍ୟତ ଜୀବନର ଶୁଭେଚ୍ଛା ଜଣାଇ

ସେମାନଙ୍କଠାରୁ ବିଦାୟ ନେଲା । ଗଲାବେଳେ ବରୁନ୍ ହାତକୁ ବଢ଼ାଇଦେଲା ତା' ପର୍ଫରମାନ୍ସ ଶୋର ପାଶ୍। ପ୍ରଣତି ମଧ୍ୟ ପ୍ରତି ଶୁଭେଚ୍ଛା ଜଣାଇବାକୁ ଯାଇ ନମସ୍କାର ହୋଇ ବିଦାୟ ଦେଲା ଶୁଭଦାକୁ । ଶୁଭଦା ସେମାନଙ୍କ ଗହଣରୁ ଧିରେ ଧିରେ ଦୂରକୁ ଦୂର ଚାଲିଯାଉଥାଏ । ନିୟତି ବିରୁଦ୍ଧରେ ଅନେକ ଅଭିଯୋଗ ଏବଂ ଅଭିମାନ ଯେପରି ଲମ୍ବା ରାସ୍ତାଟିଏ ତିଆରି ଦେଉଥିଲା ସେହିକ୍ଷଣି। ଗୋଟିଏ ବାସ୍ନାୟିତ ଫୁଲ ଭିତରୁ ଯେମିତି କିଏ ଟାଣି ନେଇଛି ସବୁଯାକ ବାସ । ଖାଲି ଛାଡି ଦେଇଯାଇଛି ଅଲୋଡା ପାଖୁଡା ସବୁକୁ ।

ସତରେ କେଉଁ ଝିଅ କ'ଣ କେବେ ଚାହେଁ ଶୁଭଦା ଭଳି ଜୀବନ ପ୍ରେମ ପାଇଁ ସମର୍ପଣ କରିବାକୁ ଯାଇ କିଏ କ'ଣ ନିଜ ଜୀବନକୁ ସମର୍ପି ଦେବାର ନିଷ୍ପତ୍ତି ନିଏ। ସବୁ କିଛି ପାଖରେ ଥାଇ, ସବୁକିଛି ପାଖରେ ପାଇ ମଧ୍ୟ ଶୁଭଦା ଭଳି ଝିଅମାନେ ଯେ ପ୍ରେମ ପାଇଁ ଆପଣା ଛାଏଁ ବଳି ପଡିଯାଆନ୍ତି। ପ୍ରେମ ଭଳି ଶାଶ୍ୱତ ପବିତ୍ର ଅନୁଭବ କିନ୍ତୁ ସେମାନଙ୍କ ପାଇଁ ଅଭିଶାପ ପାଲଟେ ଆଉ ସେମାନେ ହୋଇଯାଆନ୍ତି ଗୋଟିଏ ଗୋଟିଏ ଅଭିଶପ୍ତା।



ପୁଣି ଆରମ୍ଭ ହୁଏ ଶୁଭଦାର ସେହି ଧରା ବନ୍ଧା ଜୀବନ। ସକାଳୁ ଉଠି କାମଧନ୍ଦା ସାରି ବାହାରିବାକୁ ପଡ଼େ। ଅଫିସ୍ ମୁହାଁ ହେବା ପୂର୍ବରୁ କୁନି ଝିଅଟିକୁ ଗେହ୍ଲା କରିବାକୁ ଭୁଲେନି କେବେ। ଅଫିସ୍‌ରେ କାମସାରି ଫେରେ ସନ୍ଧ୍ୟା ପାଞ୍ଚଟାରେ। ଫ୍ରେସ୍ ହୋଇଗଲା ପରେ ସମସ୍ତଙ୍କ ପରି ବିଶ୍ରାମ ନେବାକୁ ପସନ୍ଦ କରେନି ସେ ହାତରେ ବୀଣା ନେଇ ସେ ସାଧନାରେ ବସିଯାଏ। ବରୁନ୍ ଆଉ ତା' ସହିତ ସାକ୍ଷାତ ହେଲା ପରେ କେତେବେଳେ କେମିତି ଅନ୍ୟମନସ୍କ ହୁଏ ଶୁଭଦା ସେ ନଚାହିଁଲେ ବି ସ୍ମୃତିସବୁ ତାକୁ ସିଆଡକୁ ଟାଣି ନିଅନ୍ତି। ସେ ସ୍ମୃତିରେ କିନ୍ତୁ ଥାଏ ଯନ୍ତ୍ରଣା ମିଶା ବଞ୍ଚିବାର ଗୋଟିଏ ରାହା । ଭାବନା, ଅନୁଭବ, ସ୍ମୃତି ଏସବୁ ଶବ୍ଦ କାଳ୍ପନିକ ହୋଇପାରେ; ହୋଇପାରେ ମନଗଢ଼ା କିନ୍ତୁ ଏସବୁ ଶବ୍ଦକୁ ନେଇ ଶୁଭଦା ନିଜେ ଖାଲି ବଞ୍ଚିନି ତା'ପାଇଁ ବଞ୍ଚିଯାଇଛି ବରୁନ୍‌ର ଅଧା ଭଙ୍ଗା ପରିବାର। ଅବଚେତନାର ଘୋଡଣୀ ଭିତରେ କେବେ କେବେ ବରୁନ୍‌ର ସାନ୍ନିଧ୍ୟ ତାକୁ ରୋମାଞ୍ଚିତ

କରେ ତ ଆଉ କେତେବେଳେ 'ବରଖା'ର ମିଠା ମିଠା କଥା ତାକୁ ଆନ୍ଦୋଳିତ କରେ । ଆଉ କେତେବେଳେ ବାପ ଝିଅଙ୍କର ସମ୍ମିଳିତ ଦୁଷ୍ଟାମୀ ତା' ଜୀବନରେ ପୂର୍ଣ୍ଣତା ଭରେ । ଯେତେବେଳେ ମନ ତା'ର ଭରିଯାଏ ସେସବୁ ଭାବନାର ଖେଳ ସାଙ୍ଗରେ ଖେଳି ସେ ପୁଣି ଚାଲି ଆସେ ବାସ୍ତବର ପରିଧି ଭିତରକୁ । ଯେଉଁଠି ଯନ୍ତ୍ରଣା, ପ୍ରତାରଣା, କଟୁକ୍ତି ସବୁ ମୁଣ୍ଡଟେକି ଅପେକ୍ଷା କରିଥାନ୍ତି ତାକୁ ଅବୋରି ନେବାକୁ ।

ହଠାତ୍ ମୋବାଇଲର ମ୍ୟାସେଜ୍ ଆସିବା ଶବ୍ଦରେ ସେ ତା' ଭାବନାରୁ ଫେରିଆସିଲା । ଇନ୍‌ବକ୍ସ ଖୋଲି ଦେଖିଲା ଭାଇ ମ୍ୟାସେଜ୍ ପଠାଇଛନ୍ତି, 'କମ୍ ଟୁ ହୋମ୍ ଇଟ୍‌ଇଜ୍ ଅର୍ଜେଣ୍ଟ୍ ।' ସଙ୍ଗେ ସଙ୍ଗେ ଶୁଭଦା ଘଣ୍ଟାକୁ ଚାହିଁଲା ରାତି ଆଠଟା ହେଲାଣି ସେତେବେଳକୁ । ଲାଷ୍ଟ ବସ୍ ସନ୍ଧ୍ୟା ଛଅଟାରୁ ଛାଡିଦେବଣି । ଭାଇଙ୍କୁ ଫୋନ୍ କରିବାକୁ ହେବ; ଫୋନ୍‌ରେ ନମ୍ବର ମିଶାଇଲା । ଭାଇ ଯେମିତି ଅପେକ୍ଷା କରିଥିଲେ ଶୁଭଦାର ଫୋନକୁ । ଗୋଟିଏ ରିଂରେ ଫୋନ୍ ଉଠାଇଲେ ।

'କ'ଣ ହେଇଛି ଭାଇ ? ଏମିତି ଅର୍ଜେଣ୍ଟରେ ମ୍ୟାସେଜ୍ ଦେଇଛ ?' ଶୁଭଦା ପ୍ରଶ୍ନ କଲା ।

'ତୁ ବେଶୀ କିଛି ପ୍ରଶ୍ନ ନକରି ଘରକୁ ଶୀଘ୍ର ଆସ୍ ।'

'ଏବେ ଆଉ ବସ୍ ନାହିଁ ଭାଇ କାଲି ସକାଳୁ ଫାଷ୍ଟ ବସ୍‌ରେ ବାହାରିଯିବି ।' ଏହା କହି ଶୁଭଦା ଫୋନ୍ କାଟିଲା । କ'ଣ ହେଇଛି ସେ କିଛି ବୁଝିପାରିଲା ନାହିଁ । ବାପା କି ମାଆଙ୍କ ଦେହ କିଛି ଖରାପ ହେଇଯାଇନି ତ ଆଶଙ୍କା ପଶିଲା ତା'ମନରେ । କାଲି ଘରକୁ ଯିବାକୁ ହେଲେ ଉପରିସ୍ଥ ଅଫିସରଙ୍କଠାରୁ ଛୁଟି ମାଗିବାକୁ ପଡିବ । ଅନୋନ୍ୟପାୟ ହୋଇ ଶୁଭଦା ତା'ର ଉପର ଅଫିସର୍‌ଙ୍କୁ ଫୋନ୍ କରି କାଲି ଘରକୁ ଯିବାକଥା ଜଣାଇଦେଲା । ରାତି ସାରା ଠିକ୍‌ରେ ଶୋଇପାରିନି ଶୁଭଦା । ବାପା ତା'ପାଇଁ ଚିନ୍ତିତ ହୋଇ ଅସୁସ୍ଥ ହୋଇପଡିଲେକି ଆଉ ? ଏଇ ଦିନେ ଦୁଇ ଦିନ ପୂର୍ବରୁ ସେ ବାପାଙ୍କ ସହିତ କଥା ହୋଇଛି କାଇଁ ସେତେବେଳେ ତ କିଛି ଜାଣିପାରିଲାନି । ମାଆ ସହିତ ବି କାଲି ସନ୍ଧ୍ୟାରେ କଥା ହୋଇଥିଲା । ମାଆ ବି ତାକୁ ଏ ବିଷୟରେ

କିଛି କହିନାହାନ୍ତି । ତେବେ ହଠାତ୍ ହେଲା କ'ଣ ? ସେପରି କିଛି ସିରିୟସ୍ ହୋଇନି ତ ? ଭାଇଙ୍କ କଣ୍ଠରୁ ସେପରି କିଛି ସିରିୟସ୍ ଭଳି ଜଣାପଡୁନଥିଲା । ରାତିସାରା ବିଛଣାରେ କଡ ଲେଉଟି ରାତି ପାହିଗଲା । ସକାଳୁ ସବୁକାମ ସାରି ସେ ବାହାରିପଡିଲା ଘର ଉଦ୍ଦେଶ୍ୟରେ ।

ଘରେ ପହଞ୍ଚିଲା ବେଳକୁ ଦିନ ଏଗାରଟା । କଲିଂଗ୍‌ବେଲ୍ ଦେଲା । ମାଆ ଆସି କବାଟ ଖୋଲିଲେ । ମାଆଙ୍କୁ ଦେଖିଲା ସେ ସୁସ୍ଥ ଅଛନ୍ତି । ମାଆଙ୍କ ମୁହଁରୁ ବାପା ଅସୁସ୍ଥ ଥିବାର କୌଣସି ସୂଚନା ପାଇଲା ନାହିଁ ଶୁଭଦା । ପ୍ରଶ୍ନ କଲା, 'ସବୁ ଠିକ୍ ତ ମାଆ ?'

'ସବୁ ଠିକ୍ । ତୋତେ କେତେବେଳୁ ବାପା ଅପେକ୍ଷା କରିଛନ୍ତି ।' ମାଆ ସାଧାରଣ ଭାବେ ତାକୁ ଉତ୍ତର ଦେଲେ । ଭିତର ଘରକୁ ପଶି ଯାଉ ଯାଉ ଦେଖିଲା ଆରାମ ଚୌକିରେ ବସି ବାପା ଖବର କାଗଜର ପୃଷ୍ଠା ଲେଉଟାଉଛନ୍ତି ସେ କିଛି ବୁଝିପାରିଲା ନାହିଁ ।

'କ'ଣ ହେଲା, ମୋତେ ଏମିତି ଅର୍ଜେଣ୍ଟରେ ଡ଼କାଇବାର କାରଣ କ'ଣ ମାଆ ?'

'ମାଆ ଶୁଭ ତୋର ନିଷ୍ପତ୍ତିରେ ଆମେ ସମସ୍ତେ ଖୁସି । ଆମ ମୁଣ୍ଡରୁ ଗୋଟିଏ ବୋଝ ଗଲା ଜାଣ ।'

ଶୁଭଦା କିଛି ବୁଝିପାରୁ ନଥିଲା । କି ନିଷ୍ପତ୍ତି, କ'ଣ ସେ କରିଛି ? ମାଆ ସହ ତା'ର କଥାବାର୍ତ୍ତାର କିଛି ସମୟ ପରେ ସେ ଜାଣିବାକୁ ପାଇଲା ତା' ଅଫିସ୍‌ର ସହକର୍ମୀ ସୁମନ୍ତବାବୁ ତାଙ୍କ ଘରକୁ ଆସି ଶୁଭଦା ସହ ବିବାହ କରିବାର ପ୍ରସ୍ତାବ ଦେଇଯାଇଛନ୍ତି । ସୁମନ୍ତବାବୁ ଶୁଭଦାକୁ ଆଗରୁ ଏତେ ଥର ଭେଟିଛନ୍ତି କିନ୍ତୁ କେବେ ବି ସିଧାସଳଖ ଏପରି କଥା ଶୁଭଦାକୁ କହି ନଥିଲେ । ଏପରିକି ଦିନେ ଝଡ ବର୍ଷା ସନ୍ଧ୍ୟାରେ ସୁମନ୍ତବାବୁଙ୍କୁ ତା' ଘରେ କିଛି ସମୟ ପାଇଁ ଆଶ୍ରୟ ଦେଇଥିଲେ । ସେହି ଛୋଟ ସାହାଯ୍ୟ ପାଇଁ ସୁମନ୍ତବାବୁଙ୍କର ତା'ପ୍ରତି ଦୁର୍ବଳତା ଚାଲିଆସିଲା କି ଆଉ ? ଯେହେତୁ ଦୁହେଁ ଗୋଟିଏ ଅଫିସ୍‌ରେ କାମ କରୁଥିଲେ ସେଥିପାଇଁ ଶୁଭଦାର ବାପା ମାଆ ଏହି ପ୍ରସ୍ତାବରେ ସମ୍ମତି ଦେଇଥିଲେ ଏବଂ ଶୁଭଦାର ମତାମତ ସକାରାତ୍ମକ ହେବ ବୋଲି ଆଶା ବାନ୍ଧିଥିଲେ କିନ୍ତୁ ଶୁଭଦା ସମସ୍ତ ଆଶାର ପୂର୍ଣ୍ଣଛେଦ

ପକାଇ ତା' ମାଆଙ୍କୁ ସ୍ପଷ୍ଟ ଭାବେ ଜଣାଇଦେଲା ଯେ ସେ ବିବାହ କରିବ ନାହିଁ।

ସେ ବଞ୍ଚିଥିବା ଯାଏଁ ବିବାହ କରିବ ନାହିଁ ବୋଲି ସଙ୍କଳ୍ପ ନେଇସାରିବା କଥା ଦୋହରାଇଦେଲା । ପ୍ରେମର ପ୍ରଥମ ସ୍ପର୍ଶରେ ସେ ବରୁଣ୍‌କୁ ଗ୍ରହଣ କରିସାରିଛି ଏବଂ ସାରା ଜୀବନ ତା'ର ସ୍ମୃତିରେ ହିଁ କାଟି ଦେବ। ଦ୍ୱିତୀୟ ପୁରୁଷ ଗ୍ରହଣ କରିବା ତା' ପକ୍ଷରେ ଆଉ ସମ୍ଭବ ନୁହେଁ । ତା'ର ହୃଦୟ ନିୟତି ବିରୁଦ୍ଧରେ ଅଭିମାନରେ ବିପ୍ଳବ କରିଉଠିଲା ।

ଜୀବନରେ ଜଣକୁ ବିଶ୍ୱାସ କରି ଭଲ ପାଇଥିଲା ସେଥିରେ ମଧ୍ୟ ତା' ଭାଗ୍ୟ ତା' ସହ ପରିହାସ କରିଛି। ଯାହାକୁ ନିଜର ପ୍ରଥମ ଏବଂ ଶେଷ ମନେ କରିଥିଲା ତାକୁ ତ ସେ ବାସ୍ତବ ଜୀବନରେ ଗ୍ରହଣ କରିପାରିଲା ନାହିଁ । ଏତେ ବଡ ପ୍ରତାରଣା ପରେ ବିବାହ ପ୍ରତି ତାର ଦୁଃସାହାସ କେମିତି ଆସିବ ! ସେ ନିଷ୍ପତ୍ତି ନେଇ ସାରିଥିଲା ପ୍ରେମର ସ୍ମୃତିରେ ବଞ୍ଚିଯିବ ସିନା ଲକ୍ଷ୍ମଣରେଖା ଡେଇଁ ବିବାହକୁ ଛୁଇଁବାର ଅକାରଣ ଉଦ୍ୟମଟିଏ କରିବ ନାହିଁ । ବାପା ମାଆ ଝିଅକୁ ଖୁବ୍ ବୁଝାନ୍ତି । କେଉଁ ବାପାମାଆ ଅବା ଚାହିଁବେ ତାଙ୍କ ଝିଅ ଅବାଡୁଆ ରହୁ । ତା' ଉପରେ ପୁଣି ଏପରି ସୁନ୍ଦର ପ୍ରସ୍ତାବ। ଶୁଭଦାର ନିଷ୍ଠା ଆଗରେ ସେମାନଙ୍କର ଯିଦ୍ ହାର ମାନିଲା । ଘରେ କିଛି ଦିନ ବିତାଇଲା ପରେ ଶୁଭଦା ପୁଣି ତା' କର୍ମସ୍ଥାନକୁ ଫେରିଆସିଲା।

ସକାଳୁ ସକାଳୁ ନିତ୍ୟକର୍ମସାରି ଅଫିସ୍‌କୁ ବାହାରିଗଲା ଶୁଭଦା। ଅଫିସ୍‌ରେ ପହଞ୍ଚିଲାବେଳକୁ ସୁମନ୍ତବାବୁ ପହଞ୍ଚିସାରିଥିଲେ।

'ଆଜି ସନ୍ଧ୍ୟାବେଳେ ଟିକେ ସମୟ କାଢ଼ି ଘର ଆଡେ ଆସିପାରିବେ ସୁମନ୍ତବାବୁ' ଶୁଭଦା କହିଲା ।

ଶୁଭଦା ମୁହଁରୁ କଥାପଦେ ଶୁଣିବାକୁ ଚାତକ ପରି ଯେପରି ଚାହିଁ ରହିଥିଲା ସୁମନ୍ତ।

'ହଁ କେତେବେଳେ ଆସିବି କହୁନାହାନ୍ତି ?'

'ସନ୍ଧ୍ୟାପରେ ଯେକୌଣସି ସମୟରେ ଆସିପାରନ୍ତି।' ଏହା କହି ନିଜ ଟେବୁଲ ଆଡକୁ ମୁହାଁଇଲା ଶୁଭଦା । ସାରା ଦିନ ଅଫିସ୍‌ରେ କାମ କଲା ଭିତରେ ସୁମନ୍ତ ସହିତ

ପଦୁଟିଏ କଥା ହୋଇନାହିଁ ସିଏ । ସୁମନ୍ତ ଖୁବ୍ ଦ୍ୱନ୍ଦ୍ୱରେ ପଡିଲା । ସନ୍ଧ୍ୟାବେଳେ ଘରକୁ ଡାକୁଛନ୍ତି ଅଥଚ ପଦେ କଥା ବି ହେଉ ନାହାନ୍ତି। ଯାହା ହେଉ ଘରକୁ ଗଲେ କଥା ଜଣାପଡିବ।

ସନ୍ଧ୍ୟା ହେଲା କ୍ଷଣି ସୁମନ୍ତ ଯାଇ ପହଞ୍ଚିଗଲା ଶୁଭଦା ଘରେ। ସୁମନ୍ତକୁ ଘର ଭିତରକୁ ଡାକି ଶୋଫାରେ ବସିବାକୁ କହି ମାଳତୀକୁ ଚା' ପ୍ରସ୍ତୁତ କରିବାକୁ କହିଲା । କିଛି ସମୟ ପରେ ମାଳତୀ ଦୁଇ କପ୍ ଚା' ନେଇଆସିଲା ।

'ମାଳତୀ ଝିଅ ପାଇଁ ଡିନରରେ ଚାଓମିନ୍ କରିବୁ ।' ମାଳତୀ ସୁନାପିଲାପରି ମୁଣ୍ଡ ହଲାଇ ରୋଷେଇ ଘରକୁ ଚାଲିଗଲା।

ଚା' କପ୍ ସୁମନ୍ତ ଆଡକୁ ବଢ଼ାଇ ଦେଉ ଦେଉ ଶୁଭଦା କହିଲା, 'ଆପଣ ଆମ ଘରକୁ ଯାଇଥିଲେ ?'

'ହଁ, ଆପଣଙ୍କୁ କହିବାକୁ ମୋର ସାହସ ହେଲାନି ସେଥିପାଇଁ ବାପାଙ୍କୁ ନେଇ ଆପଣଙ୍କ ଘରକୁ ଯିବାଟା ଉଚିତ୍ ମନେକଲି।'

'ଦେଖନ୍ତୁ ସୁମନ୍ତବାବୁ ଆପଣ ଦେଖିବାକୁ ଯଥେଷ୍ଟ ସୁନ୍ଦର, ଗୋଟିଏ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ ଆପଣ, ଉଚ୍ଚ ପଦବୀରେ ଚାକିରୀ କରିଛନ୍ତି । ଯେକେହି ଝିଅ ଆପଣଙ୍କୁ ସ୍ୱାମୀ ରୂପରେ ପାଇବା ପାଇଁ ଆଶା ବାନ୍ଧିବ । କିନ୍ତୁ ମୁଁ କେବେଠାରୁ ଆଉ କାହାର ହୋଇସାରିଛି । ମୁଁ ଆପଣଙ୍କର ହେବା ପାଇଁ ମୋ ପାଖରେ ଆଉ ଯୋଗ୍ୟତା ନାହିଁ । ଆପଣ ମୋ କଥା ଶୁଣି ନିରାଶ ହୋଇପାରନ୍ତି କିନ୍ତୁ ଏହା ଅପ୍ରିୟ ସତ୍ୟ । ମୋତେ ଦେଖି ଆପଣ ଭାବୁଥିବେ ମୁଁ ଅବିବାହିତା। ଆପଣଙ୍କ ଭାବନାରେ ଆପଣ ଠିକ୍ ଆଉ ମୋ ଭାବନାରେ ମୁଁ ଠିକ୍।

ଆଜି ଅଫିସ୍‌ରେ ମଧ୍ୟ ମୁଁ ଏହି କଥା ଆପଣଙ୍କୁ କହିପାରିଥାନ୍ତି କିନ୍ତୁ ସେଠାକାର ପରିସ୍ଥିତି ଓ ପରିବେଶ ମୋତେ ଅନୁମତି ଦେଲାନି ଏସବୁ କହିବା ପାଇଁ । ସୁମନ୍ତ କିନ୍ତୁ କୌଣସି କଥା ଶୁଣିବା ପାଇଁ ପ୍ରସ୍ତୁତ ନଥିଲା । ସେ ଚାହୁଁଥିଲା ଶୁଭଦାକୁ ଅର୍ଦ୍ଧାଙ୍ଗୀନି ଭାବରେ ପାଇବାକୁ। ଆପଣଙ୍କର ଅତୀତ ସହିତ ମୋର କୌଣସି ସଂପର୍କ ନାହିଁ ମୁଁ ଆପଣଙ୍କୁ ଭଲ ପାଉଛି ଆଉ କଥା ଦେଉଛି ଆପଣଙ୍କୁ ଖୁବ୍ ଭଲରେ ରଖିବି ।

ଆପଣଙ୍କ କଥା ଉପରେ ମୋର ବିଶ୍ୱାସ ଅଛି ସୁମନ୍ତବାବୁ କିନ୍ତୁ ଆପଣ ମୋତେ କଥା ଦେବା ଆଗରୁ ମୁଁ ଆଉ କାହାକୁ କଥା ଦେଇସାରିଛି । ମୁଁ

କାହାକୁ ପ୍ରତାରିତ କରିପାରିବି ନାହିଁ। ପ୍ରତାରଣାର ଯନ୍ତ୍ରଣା ମୋଠାରୁ ବୋଧହୁଏ ଅଧିକ କେହି ଜାଣି ନଥିବେ। ମୋତେ କ୍ଷମା କରିବେ ସୁମନ୍ତବାବୁ।' ଏସବୁ ଯୁକ୍ତିକୁ ସୁମନ୍ତବାବୁ କିଛି ବୁଝି ପାରୁ ନଥିଲେ । ବାହାରୁ ଏତେ ସହଜ ସରଳ ଲାଗୁଥିବା ଝିଅଟି ଯେ ହୃଦୟ ଭିତରେ ଏତେ ଅକୁହା କଥାକୁ ଚାପି ରଖିପାରିଛି ତାହା ତାଙ୍କର ବିଶ୍ୱାସ ହେଉନଥିଲା ।

'ଆପଣ ଯଦି କିଛି ନ ଭାବନ୍ତି ତେବେ ମୋତେ ସତ କ'ଣ କହିପାରନ୍ତି ।' ସୁମନ୍ତ ଶୁଭଦା ଉଦ୍ଦେଶ୍ୟରେ କହିଲା।

'ନା, ସୁମନ୍ତବାବୁ । ତାହା ମୋ ପରିବାରର କଥା । ଆଉ ଗୋଟିଏ ଦାୟିତ୍ୱବାନ ସ୍ତ୍ରୀ ହିସାବରେ ମୋ ଘରର କଥା ମୁଁ ବାହାରେ କହି ପାରିବିନାହିଁ । ମୁଁ ଆପଣଙ୍କୁ ଅନୁରୋଧ କରୁଛି ଆପଣ ମୋତେ ଭୁଲି ଯାଆନ୍ତୁ ମୋତେ ମୋ ଦୁନିଆଁରେ ବଞ୍ଚିବାକୁ ଦିଅନ୍ତୁ । ମୋତେ ଆଉ ପାପ କରିବା ପାଇଁ ପ୍ରବର୍ତ୍ତାନ୍ତୁ ନାହିଁ । ମୋର ଅତୀତ କେବଳ ମୋର । ତାହା ଜାଣି ଆପଣଙ୍କର କିଛି ଲାଭ ନାହିଁ ।'

'ମୁଁ ଆପଣଙ୍କ ଅତୀତ ଜାଣିଛି। ବରୁନ୍ ଆପଣଙ୍କୁ ପ୍ରତାରିତ କଥା ବି ଜାଣିଛି। ସେଥିପାଇଁ ତ ମୁଁ ଆପଣଙ୍କୁ ହାତ ବଢ଼ାଇଛି ।'

'ନା, ମୁଁ କାହା ଦୟାରେ ବଞ୍ଚିବାକୁ ଚାହୁଁନାହିଁ ସୁମନ୍ତବାବୁ। ଯଦି ଆପଣ ଜାଣିଛନ୍ତି ମୋର ଆଉ ବରୁନ୍‌ର ସଂପର୍କକୁ ନେଇ ତେବେ କିପରି ଆପଣ ବିବାହର ପ୍ରସ୍ତାବ ଦେଲେ । ଆପଣ କ'ଣ ଜାଣିନାହାନ୍ତି ହିନ୍ଦୁ ପରିବାରରେ ସ୍ୱାମୀ ଥାଇ ଦ୍ୱିତୀୟ ବିବାହ ଅସମ୍ଭବ ବୋଲି। ମୁଁ ଯେମିତି ଅଛି ଠିକ୍ ଅଛି । ମୋତେ ଏମିତି ରହିବାକୁ ଦିଅନ୍ତୁ ।'

'ଶୁଭଦା ! ବରୁନ୍ ତୁମକୁ ପ୍ରତାରିତ କଲାବୋଲି ସାରା ଜୀବନ ଅବିବାହିତା ରହିବାର ନିଷ୍ପତ୍ତି ନେଇପାରୁଛ କିପରି ? କେମିତି ତୁମେ ଏକା ରହିବ ? କେତେ ଲୋକଙ୍କର ଟାହି ଟାପରା ଶୁଣିବ ? ତୁମେ ଯଦି ତୁମର ନିଷ୍ପତ୍ତିର ପୁନର୍ବିଚାର ନ କର ତା'ହେଲେ ମୁଁ ବଞ୍ଚି ପାରିବିନାହିଁ। ଯାହା ହୃଦୟରେ ତୁମ ପ୍ରତି ଆନ୍ତରିକତା ନାହିଁ ସେପରି ଆବେଗହୀନ ମଣିଷ ପାଇଁ ତୁମେ ନିଜ ଉପରେ ପ୍ରତିଶୋଧ କାହିଁକି ନେଉଛ ? ଏବେ ବି ସମୟ ଅଛି ଶୁଭଦା, ପ୍ଲିଜ୍ ମାନିଯାଅ। ତୁମର

ସ୍ୱୀକୃତି ପାଇଁ ମୁଁ ଚାହିଁ ବସିଛି । ତୁମର ଅତୀତରେ ଯାହା ଘଟିଛି ସେଥିନେଇ ତୁମକୁ ଗ୍ରହଣ କରିବାରେ ମୋର କୌଣସି ଦ୍ୱିଧା ନାହିଁ।'

ଶୁଭଦା ସୁମନ୍ତର ହାତ ଧରି କହିଉଠିଲା, 'ସୁମନ୍ତ, ପ୍ଲିଜ୍ ମୋତେ ସେପରି କୁହନି। ମୁଁ ଆଉ କାହାର ସ୍ତ୍ରୀ ହୋଇପାରିବିନାହିଁ। ଅନ୍ୟ କାହାକୁ ସ୍ୱାମୀ ରୂପରେ ଗ୍ରହଣ କରିବାର କୁତ୍ସିତ ମାନସିକତା ମୋ ପାଖରେ ଆଉ ନାହିଁ। ତୁମର ପ୍ରେମ ପାଇଁ ମୁଁ ଯୋଗ୍ୟ ନୁହେଁ। ପ୍ରେମ ପାଇଁ ଜୀବନକୁ ତିଳ ତିଳ କରି ଜାଳି ସାରିଲା ପରେ ଆଉ ଯେ କ'ଣ ମୋ ପାଖରେ ବାକି ଅଛି ଯେ ତୁମକୁ ସ୍ତ୍ରୀ ରୂପେ ମୁଁ ଦେଇପାରିବି ?' ଶୁଭଦା ଭୋ ଭୋ ହୋଇ କାନ୍ଦି ଉଠିଲା।

ଦ୍ୱାରବନ୍ଧ ପାଖରେ କେତେବେଳୁ ଛିଡା ହୋଇ ସବୁ ଶୁଣୁଥିଲା ମାଳତୀ । ସେ କାଠପାଲଟି ଯାଇଛି । ଏ କିମିତିକା ଜୀବନ, ଏ କିମିତିକା ଯନ୍ତ୍ରଣା ଆଉ ଏ କିମିତି ଜୀଇଁବା... କହି ମୁଣ୍ଡରେ ହାତ ମାରିଲା ଏବଂ ଭଗବାନଙ୍କ ଉଦ୍ଦେଶ୍ୟରେ ମିନତି ଜଣାଇ ଖାଲି ହୋଇସାରିଥିବା ଚା' କପ୍ ଦୁଇଟିକୁ ଉଠାଇନେଲା ।



## ସୁନୀତି ମୁଣ୍ଡଙ୍କ ଅନ୍ୟାନ୍ୟ କୃତି:

ପର୍ଦ୍ଦାପଛର ଚର୍ଯାପଦ(କବିତା)
ଶବ୍ଦ ଖେଳ (କବିତା)
ଯେତେସବୁ ସକାଳ (କବିତା)
ବେପଥୁ ବେହାଗ (କବିତା)
ଦସ୍ତାବିଜ୍ (କବିତା)
ଝିଅ (କବିତା)
ଅନୁଷ୍ଟୁପ (ଗଳ୍ପ)
ଛାଇ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ)
ଭାଲେଣ୍ଟାଇନ୍ (ଉପନ୍ୟାସ)
ବ୍ରେଭ୍‌ର ଦୁଃଖ (ଉପନ୍ୟାସ)
ଅଗରବତୀର ଘର (ଉପନ୍ୟାସ)
ମାଟ୍ରିମନି ଡଟ୍ କମ୍ (ଉପନ୍ୟାସ)
ଜିଗୋଲୋ (ଉପନ୍ୟାସ)
ବଣ୍ଟୁ ଓ ଅନ୍ୟାନ୍ୟ ଗଳ୍ପ (ଅନୁବାଦ)
ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୧ (ଅନୁବାଦ)
ଜିବ୍ରାନ୍‌ଙ୍କ ଜୀବନ ଜିଜ୍ଞାସା-୨ (ଅନୁବାଦ)
ରାଜସ୍ଥାନ ଏକ ପର୍ଯ୍ୟାଲୋଚନା (ଭ୍ରମଣ)
ଆଳାପ (ସାହିତ୍ୟ ବିନିମୟ)




ଶୁଭଦାଦେବୀଙ୍କ ମାନସିକ ପରିଧି ଯେ ଝିଅ ଆଉ ସ୍ୱାମୀଙ୍କୁ ନେଇ ଅଙ୍ଗପୂର୍ଣ୍ଣ ତାହା ମାଳତୀ ଭଲ ଭାବେ ଜାଣିଥିଲା । ପ୍ରେମ ଶରୀରରେ ନୁହେଁ ମନରେ ଅଧିକ ଥାଏ ବୋଲି ଶୁଭଦାଦେବୀ ପ୍ରମାଣ କରିସାରିଥିଲେ । ରାତି ପାହିଲେ ଶୁଭଦାଦେବୀ ବିଛଣା ଛାଡି ନିତ୍ୟକର୍ମ ସାରି ସ୍ୱାମୀଙ୍କର ପାଦଧୂଆ ପାଣି ମୁହଁରେ ନମାରିଲେ କିଛି କରନ୍ତି ନାହିଁ । ଏ ଯୁଗରେ ବି ଏପରି ଚିନ୍ତାଧାରାର ସ୍ତ୍ରୀ ଅଛନ୍ତି ତାହା ମାଳତୀକୁ ଆଶ୍ଚର୍ଯ୍ୟ କରାଏ । ଏହି ଗଲା ସାବିତ୍ରୀରେ ଶୁଭଦାର ସାବିତ୍ରୀ ବ୍ରତ କରିବା ନେଇ ସାହି ପଡିଶା କେତେ ଟୁପୁରୁଟାପୁରୁ ହେଲେ । ସେସବୁ ପ୍ରତି କେବେ ନିଘା କରନ୍ତିନି ସେ । ସ୍ୱାମୀ ଆଉ ସନ୍ତାନର ମଙ୍ଗଳ ମନାସିବା ଛଡା ତାଙ୍କର ଯେପରି ଜୀବନରେ ଆଉ କୌଣସି ଉଦ୍ଦେଶ୍ୟ ନାହିଁ । ନିଇତି ଏମିତି କଳ୍ପନାରେ ବରୁନ୍‌ର ସାନ୍ନିଧରେ ଭିଜିବା ଏବଂ ଝିଅ ସାଙ୍ଗରେ ହସଖୁସୀ ହେବା ତାଙ୍କ ଜୀବନର ଏକ ସତ୍ୟତା ପାଲଟି ଯାଇଛି ଯେପରି ....

**ABHISAPTA**
Fiction by **Suniti Mund**

Dakshya Books
*(A unit of dakshya venture pvt. ltd.)*

Cover design : Prakash Mohapatra